ଅନୁଭୂତ

# ଭକ୍ତି ଲହରୀ



ଲେଖକ :

କୈଳାସ ଚନ୍ଦ୍ର ମହାନ୍ତି

Digitized by srujanika@gmail.com

ଓଁ

ଉତ୍ସର୍

# ଅନୁଭୂତ
# ଭକ୍ତିଲହରୀ

ଲେଖକ
ଶ୍ରୀ କୈଳାସ ଚନ୍ଦ୍ର ମହାନ୍ତି

Digitized by srujanika@gmail.com

# ଅନୁଭୂତ ଭକ୍ତିଲହରୀ

ପ୍ରକାଶକ :

**ଶ୍ରୀ ଶଶୀଭୂଷଣ ମହାନ୍ତି**

ମୁ-ବାଜପୁର

ପୋ: ଅ: କୃଷ୍ଣନଗର ପାଟଣା

ଜିଲ୍ଲା-ପୁରୀ

ଲେଖକ :

**ଶ୍ରୀ କୈଳାସ ଚନ୍ଦ୍ର ମହାନ୍ତି**

ମୁ-ବାଜପୁର

ପୋ: ଅ:-କୃଷ୍ଣନଗର ପାଟଣା

ଜିଲ୍ଲା-ପୁରୀ

ମୁଦ୍ରକ :

**ଶ୍ରୀନାରାୟଣ ପ୍ରେସ୍**

ବାଲିସାହି, ପୁରୀ

ପ୍ରକାଶକାଳ :

**ଶ୍ରୀଗୁଣ୍ଡିଚା**

୨ ଜୁଲାଇ, ୧୯୯୨

ମୂଲ୍ୟ-[redacted] ଟ ୬-୦୦ ମାତ୍ର

Digitized by srujanika@gmail.com

# ।। ସୂଚନା ।।

ଆମ ଓଡ଼ିଆ ଭାଷାରେ ଜଣାଣ ଓ ଭଜନର କିଛି ଅଭାବ ନାହିଁ । ଓଡ଼ିଆ ସାହିତ୍ୟ ଏକ ଜଣାଣ ସର୍ବସ୍ୱ ସାହିତ୍ୟ କହିଲେ ଚଳେ । ଭାରତବର୍ଷରେ ଉତ୍କଳ ହେଉଛି ଏକ ମହା ଆଧ୍ୟାତ୍ମିକ ପୁଣ୍ୟ ଭୂମି । ଏହାର ଶ୍ରୀକ୍ଷେତ୍ରରେ ସବୁ ଧର୍ମର, ସବୁ ମତର ଓ ସବୁ ପଥର ସମନ୍ୱୟ ଘଟିଛି । ଏ ପ୍ରସଙ୍ଗରେ କପିଳ ସଂହିତାରେ ଉଲ୍ଲେଖ ଅଛି:—

"ବର୍ଷାଣାଂ ଭାରତ ଶ୍ରେଷ୍ଠୋ ଦେଶାନାଂ ମୁକୁନ୍ଦଃ ଶ୍ରୁତଃ,
ଉତ୍କଳସ୍ୟ ସମୋ ଦେଶ କୁତ୍ର ନାସ୍ତି ମହୀତଳେ ।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ମଧ୍ୟ ଏ ପ୍ରସଙ୍ଗରେ 'ବନ୍ଦୀର ଆତ୍ମକଥା' କବିତାରେ ଲେଖି ଯାଇଛନ୍ତି :—

"ଏହି ସେ ଉତ୍କଳ ପୁଣ୍ୟ ଦେବସ୍ଥଳୀ,
ହୋଇଛନ୍ତି ଠୁଳ ଯହିଁ ତୀର୍ଥାବଳୀ ।
ତା ମଧ୍ୟେ ବିରାଜେ ପୁଣ୍ୟ ନୀଳାଚଳ,
ଭାରତର ଧର୍ମ-ହୃଦ-ଶତଦଳ ।

× × ×

ଜଗତ-ସରସେ ଭାରତ-କମଳ,
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।
ଭାରତେ କୈବଲ୍ୟ ସକଳ ଆହାର,
ଭାରତେ ଶ୍ମଶାନ ସ୍ୱରଗ ଦୁଆର । ଇତ୍ୟାଦି ।"

ବହୁ ଶାସ୍ତ୍ର ପୁରାଣରେ ବହୁ ପୁରାତନ ଯୁଗରୁ ଉତ୍କଳ ତଥା ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ବିଷୟରେ ବହୁ ପ୍ରକାରର ବର୍ଣ୍ଣନା ଦେଖିବାକୁ ମିଳେ । ତେଣୁ ଧର୍ମ ପ୍ରାଣ ଉତ୍କଳ ବାସୀଙ୍କର ଏକ ବିଶେଷତ୍ୱ ରହିଛି । ଜଣାଣ ଓ ଭଜନ ରଚନା ସେମାନଙ୍କର ଏକ ସ୍ୱଭାବ ସୁଲଭ ଗୁଣ କହିଲେ ଅତ୍ୟୁକ୍ତି ହେବନାହିଁ । ପୁର, ପଲ୍ଲୀ ସର୍ବତ୍ର ଏହାର ବହୁଳ ଦୃଷ୍ଟାନ୍ତ ଦେଖାଯାଏ । ପୂର୍ବରୁ ଅନେକ ଭକ୍ତ ଓ କବି ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ବହୁ ଉପାଦେୟ ଭକ୍ତି-ରସାତ୍ମକ ଜଣାଣ ଓ ଭଜନ ରଚନା କରି ଆମ୍ଭମାନଙ୍କର

Digitized by srujanika@gmail.com

ଚିର ସ୍ମରଣୀୟ ହୋଇ ରହିଛନ୍ତି ଓ ରହିଥିବେ । ସେହି ଅରଣ୍ୟାନି ମଧ୍ୟରେ ଏହି ପୁସ୍ତିକାଟି ସାମାନ୍ୟ ଦୂବ ଘାସ ସଦୃଶ, ଯେଉଁ ଦୁବଘାସରେ କି ଆମ ଦେଶରେ ଦେବତାଙ୍କୁ ପୂଜା କରାଯାଏ. ବିଶ୍ଳେଷଣରୁ ଜଣାଯାଏ ଯେ ସମସ୍ତ ଜଣାଣ ଓ ଭଜନର ଭାବ, ଲକ୍ଷ୍ୟ, ଉଦ୍ଦେଶ୍ୟ ଓ ବିଷୟବସ୍ତୁ ପ୍ରାୟ ସମାନ । କେବଳ ପ୍ରକାଶନ ଭଙ୍ଗୀ ବା ଶୈଳୀରେ ଓ ଭାଷାରେ ଯାହା କିଛି ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏହା ଏକ ପରିବା, ତିନି ତିଅଣ ପରି । ତେଣୁ ମୋର ଏ ରଚନା ସେହି ଧର୍ମାନୁବଲମ୍ବୀ ବା ସେହି ଧରଣର କହିଲେ ଚଳେ ।

ଏହି ପୁସ୍ତକଟିର ବିଷୟବସ୍ତୁ ପ୍ରଧାନତଃ ଦୁଇ ଭାଗରେ ବିଭକ୍ତ, ଯଥା— ଜଣାଣ ଓ ଭଜନ । ପୁଣି ଜଣାଣ ବିଭାଗଟି ତିନିଗୋଟି ଉପ ବିଭାଗରେ ବିଭକ୍ତ, ଯଥାଃ— ଶ୍ରୀ ଈଶ୍ବର ଜଣାଣ, ଶ୍ରୀ ଜଗନ୍ନାଥ ଜଣାଣ ଓ ଅନ୍ୟାନ୍ୟ ଦେବ-ଦେବୀଙ୍କ ଜଣାଣ ।

ଏହାର ପଠନ ଓ ଶ୍ରବଣ ଦ୍ୱାରା ଧର୍ମପ୍ରାଣ ବ୍ୟକ୍ତିଗଣଙ୍କର ହୃଦୟରେ ଯତ୍‌କିଞ୍ଚିତ୍ ବିଶ୍ୱାସ ଉଦ୍ରେକ ହୋଇ ପାରିଲେ ନିଜକୁ କୃତାର୍ଥ ମନେ କରିବି ।

ପାଠକ ପାଠିକା ବୃନ୍ଦ ସ୍ୱକୀୟ ବିଦ୍‌ବତ୍ତା ଓ ହୃଦୟବତ୍ତା ବଳରେ ଏଥିରେ ଥିବା ଦୋଷ ତ୍ରୁଟି ମାର୍ଜ୍ଜନା କରିବାକୁ ସବିଶେଷ ଅନୁରୋଧ ।

ଶ୍ରୀକ୍ଷେତ୍ର ସୁରଙ୍ଗୀ ମଠାଧୀଶ ଶ୍ରୀମଦ୍ ଭାଗବତାନୁରାଗୀ ପୂଜ୍ୟପାଦ ଶ୍ରୀଯୁକ୍ତ ବ୍ରଜେନ୍ଦ୍ର ନନ୍ଦନ ଦାସ ମହୋଦୟ ତାଙ୍କର ବହୁମୂଲ୍ୟ ସମୟ ବିନିମୟରେ ଏହି ପୁସ୍ତକଟିର ପାଣ୍ଡୁଲିପି ସଂଶୋଧନ କାର୍ଯ୍ୟ ସ୍ୱେଚ୍ଛାକୃତଭାବେ ସମ୍ପାଦନ କରିଥିବାରୁ ମୁଁ ତାଙ୍କ ନିକଟରେ ଚିର କୃତଜ୍ଞ ଓ ଆଜୀବନ ଋଣୀ ।

॥ ଇତି ॥

ବିନମ୍ରାବନତ
ଲେଖକ

Digitized by srujanika@gmail.com

# ସୂଚୀପତ୍ର



Digitized by srujanika@gmail.com

କ୍ର. ନଂ ବିଷୟ ପୃଷ୍ଠା

## (ଖ) ଶ୍ରୀ ଜଗନ୍ନାଥ ଜଣାଣ



Digitized by srujanika@gmail.com

| କ୍ର. ନଂ | ବିଷୟ | ପୃଷ୍ଠା |
|---|---|---|

## (ଗ) ଅନ୍ୟାନ୍ୟ ଦେବଦେବୀଙ୍କ ଜଣାଣ



## (ଘ) ଭଜନ ବିଭାଗ



Digitized by srujanika@gmail.com

| କ୍ର. ନଂ | ବିଷୟ | ପୃଷ୍ଠା |
|---|---|---|
| ୧୩ । | ଚାଲିବାକୁ ଅଛି ବାଟ ଆଜି ବହୁ ଦୂରରେ | ୯୬ |
| ୧୪ । | ମନ ସଙ୍ଗଲେ ବେଳ ଥାଉଁ ଥାଉଁ ଭଜ ହରିଙ୍କେ | ୯୭ |
| ୧୫ । | ମିଥ୍ୟା ପ୍ରତାରଣା ଦେଲେ ତୋର ଚିର ସାଥି | ୯୮ |
| ୧୬ । | ଆରେ ଭୁଲ ମନ | ୯୯ |
| ୧୭ । | ମରଣାନ୍ତେ ରାଜା ପ୍ରଜା ହୁଅନ୍ତି ସମାନ | ୧୦୦ |
| ୧୮ । | ସଂସାର ହ୍ରଦରେ ଖେଳେ କାଳ ରୂପୀ ଫଣୀ | ୧୦୧ |
| ୧୯ । | ତୀର୍ଥ କ୍ଷେତ୍ରେ ବାସ ସଦା ପ୍ରସାଦ ଭୋଜନ | ୧୦୨ |
| ୨୦ । | ସାଗର ତେଉ ସଦୃଶ ଅଟେ ଏ ଜୀବନ | ୧୦୩ |
| ୨୧ । | ସତ ରଜ, ତମ ଗୁଣ | ୧୦୪ |
| ୨୨ । | ହରି ନାମେ ଅଛି କି ନିଶା | ୧୦୫ |
| ୨୩ । | ପାରିବୁକି ରଖି ତୁ ଧରି | ୧୦୬ |
| ୨୪ । | ଶୁଣ ଶୁଣରେ ମନ ହୋଇଣ ସ୍ଥିର | ୧୦୭ |

—o—

Digitized by srujanika@gmail.com

# ଉପକ୍ରମଣିକା

ଈଶ୍ୱରଙ୍କର ସତ୍ତା ମୁଁ ମୋ ଜୀବନରେ ଏଯାବତ୍ ଯତ୍‌କିଞ୍ଚିତ ଉପଲବ୍ଧି କରିଛି ତହିଁରୁ କିୟଦଂଶ ଏହି ପୁସ୍ତିକା ମାଧ୍ୟମରେ ପ୍ରକାଶ କରିବାକୁ ଦୁଃସାହସମାତ୍ର କରିଛି । ଏହା କେବଳହିଁ ସେହି ପରମେଶ୍ୱରଙ୍କର କରୁଣା ।

୧ । **ବିଶ୍ୱାସ**—ଈଶ୍ୱର କିଏ ବା କ'ଣ ତାହା ଭାଷାରେ କି ଲେଖାମାନରେ ପ୍ରକାଶ କରିବା କାହା ପକ୍ଷରେ କେବେହିଁ ସମ୍ଭବପର ବା ସହଜସାଧ୍ୟ ନୁହେଁ । ତାହା କେବଳ ମାନବ ପକ୍ଷେ ଉପଲବ୍ଧି ବା ଅନୁଭବର ବିଷୟ । ଆସ୍ତିକ ଓ ନାସ୍ତିକ ଦୁଇ ଶ୍ରେଣୀର ବ୍ୟକ୍ତି ଜଗତରେ ଦେଖାଯାନ୍ତି । ଏହି ପ୍ରସଙ୍ଗରେ ଜନୈକ ନାସ୍ତିକ ବ୍ୟକ୍ତି ଜନୈକ ଆସ୍ତିକ ବ୍ୟକ୍ତିଙ୍କୁ ଏକଦା ପ୍ରଶ୍ନ କଲେ, "ମହାଶୟ ! ଯଦି ଈଶ୍ୱର ଅଛନ୍ତି ବୋଲି ତୁମେ ବିଶ୍ୱାସ କର ତେବେ ତାଙ୍କୁ ମୋତେ ଦେଖାଇ ଦେଇପାରିବ ?" ଆସ୍ତିକ ବ୍ୟକ୍ତି ଏହାର ଉତ୍ତରରେ ନାସ୍ତିକ ବ୍ୟକ୍ତିଙ୍କ ମୁଖରେ ଏକ ମୁଥ ଦେଲେ । ନାସ୍ତିକ ବ୍ୟକ୍ତି ତଦ୍ୱାରା ବିଶେଷ ବେଦନା ଅନୁଭବ କଲେ । ତା'ପରେ ଆସ୍ତିକ ବ୍ୟକ୍ତି ତାଙ୍କୁ ପ୍ରଶ୍ନ କଲେ, "ହେ ନାସ୍ତିକ ବନ୍ଧୁ ! ତୁମେ ଯେଉଁ ବେଦନା ଅନୁଭବ କଲ ତାହାର ରୂପ ବା ଆକାର କିପରି ମୋତେ ଦେଖାଇ ଦେଇପାରିବ କି ?" ନାସ୍ତିକ ବ୍ୟକ୍ତି ବ୍ୟଥିତ ହୃଦୟରେ କହିଲେ, "ପାରିବ ନାହିଁ ବନ୍ଧୁ ! ତୁମରି ଏହି ମୁଥଟି ମୋତେ ଈଶ୍ୱରଙ୍କୁ ଦେଖାଇଛି । ମୁଁ ଏହା ପୂର୍ବରୁ ଅନେକ ବସ୍ତୁକୁ ନଦେଖି ମଧ୍ୟ ତାହାର ଅସ୍ତିତ୍ୱକୁ ସ୍ୱୀକାର କରିଛି ଓ ବିଶ୍ୱାସ କରିଛି ।" ତେଣୁ ଆସ୍ତିକ ବ୍ୟକ୍ତି ଏହା ଦ୍ୱାରା ତାଙ୍କୁ ବୁଝାଇ ଦେଲେ ଯେ ଈଶ୍ୱର ହେଉଛନ୍ତି ସେହିପରି ଅନୁଭବର ବସ୍ତୁ । ସେ ନିରାକାର, ନିରଞ୍ଜନ, ସର୍ବବ୍ୟାପୀ, ସର୍ବଜ୍ଞ ଓ ସର୍ବଶକ୍ତିମାନ୍ । ସେ ମଧ୍ୟ ଏ ବିଶ୍ୱର ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଓ ସଂହାର କର୍ତ୍ତା । ସେ ସ୍ୱର୍ଗରେ ନ ଥାନ୍ତି କିମ୍ବା କୌଣସି ଏକ

Digitized by srujanika@gmail.com

ନିର୍ଦ୍ଦିଷ୍ଟସ୍ଥାନରେ ନଥାନ୍ତି । ତାଙ୍କୁ କୌଣସି ଏକ ନିର୍ଦ୍ଦିଷ୍ଟସ୍ଥାନ ବା ସମୟ ସୀମା ମଧ୍ୟରେ ଆବଦ୍ଧ କରି ରଖିବାଟା ତାଙ୍କ ମହାନତାର ଅବମାନନା ମାତ୍ର ହେବ । ସେ ସବୁ ସ୍ଥାନରେ ମନୁଷ୍ୟଙ୍କ ହୃଦୟରେ ଲୁକ୍କାୟିତ ଭାବେ ରହିଥାନ୍ତି । ଅଙ୍ଗୁଳିର ମାଂସ ଅଙ୍ଗୁଳିର ନଖଠାରୁ ଯେତିକି ନିକଟରେ ଥାଏ ଈଶ୍ୱର ତାହାଠାରୁ ବଳି ଆମ୍ଭମାନଙ୍କର ଆତ୍ମାର ନିକଟରେ ଥାନ୍ତି । ଆମ୍ଭେମାନେ ରାତ୍ରିରେ ଆକାଶରେ ତାରା ଦେଖୁ । କିନ୍ତୁ ଦିନରେ ଦେଖିପାରୁ ନାହିଁ । ତାହା ବୋଲି ଭାବିବା ଉଚିତ ନୁହେଁ ଯେ ଦିନରେ ଆକାଶରେ ତାରା ନଥାନ୍ତି । ସୂର୍ଯ୍ୟାଲୋକବଶତଃ ଦିନରେ ତାରାମାନେ ଆମର ଦୃଷ୍ଟିଗୋଚର ହୁଅନ୍ତି ନାହିଁ । ଆମର ଅଜ୍ଞତା ହେଉଛି ସେହିପରି, ଯେଉଁ କାରଣରୁ ଆମେ ଈଶ୍ୱରଙ୍କର ସତ୍ତା ଉପଲବ୍ଧି କରିପାରୁ ନାହୁଁ । ସେଥିପାଇଁ ଈଶ୍ୱର ନାହାନ୍ତି ବୋଲି ଭାବିବା ବିଧେୟ ନୁହେଁ । ଈଶ୍ୱର ଯୁଗେ ଯୁଗେ ଅଛନ୍ତି । କଥାରେ ଅଛି "ବିଶ୍ୱାସେ ମିଳନ୍ତି ହରି, ତର୍କେ ବହୁଦୂର ।"

ଉପନିଷଦ୍ କହେ :—

ଅପାଣି ପାଦୋ ଜବନୋଗ୍ରହୀତା,
ପଶ୍ୟତ୍ୟ ଚକ୍ଷୁଃ ସଶୃଣୋତ୍ୟ-କର୍ଣ୍ଣଃ,
ସ ବେତ୍ତି ବେଦ୍ୟମ୍ ନ ଚ ତସ୍ୟାସ୍ତି ବେତ୍ତା
ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍ ।

ଅର୍ଥାତ୍ ତାଙ୍କର ହାତ କିବା ପାଦ ନାହିଁ କିନ୍ତୁ ସେ ସମସ୍ତଙ୍କୁ ଧରି ରଖିଛନ୍ତି ଓ ସବୁ ସ୍ଥାନକୁ ଯାଇ ପାରୁଛନ୍ତି । ତାଙ୍କର ଆଖି ନାହିଁ କିନ୍ତୁ ସେ ସବୁ ଦେଖି ପାରୁଛନ୍ତି । ତାଙ୍କର କାନ ନାହିଁ କିନ୍ତୁ ସେ ସବୁ ଶୁଣି ପାରୁଛନ୍ତି । ସେ ସମସ୍ତଙ୍କୁ ଜାଣି ପାରନ୍ତି, କିନ୍ତୁ ତାଙ୍କୁ କେହି ଜାଣିପାରେ ନାହିଁ । ଏହିପରି ଯେ ସେ ହେଉଛନ୍ତି ଈଶ୍ୱର ବା ପୁରୁଷୋତ୍ତମ ।

ତୁଳସୀ ରାମାୟଣରେ ମଧ୍ୟ ଏହିପରି ଉଲ୍ଲେଖ ଅଛି :—

"ବିନୁ ପଦ ଚଲଇ ଶୁନଇ ବିନୁ କାନା,
କର ବିନୁ କରଇ କରମ ବିଧି ନାନା ।
ଆନନ ରହିତ ସକଲ ରସ ଭୋଗୀ ।" ଇତ୍ୟାଦି ।

Digitized by srujanika@gmail.com

ତାହାର ଓଡ଼ିଆ ଅନୁବାଦ ହେଉଛି—

"ବିନା ପାଦେ ଚଳନ୍ତି ସେ କାନ ବିନା ଶ୍ରୋତା,
କର ବିନୁଁ ସର୍ବ ଜଗତର ସେ କରତା ।
ଆନନ ନାହିଁ ତଥାପି ସର୍ବରସ ଭୋଗୀ,
ବାକ୍ ଶକ୍ତି ନ ଥାଇ ହେଁହେ ବକ୍ତା ବଡ଼ ଯୋଗୀ ।
ଚକ୍ଷୁ ବିନୁଁ ପରିଶି ନୟନ ବିନୁଁ ଦେଖି,
ନାସା ବିନୁଁ ସର୍ବ ବାସ ପାରନ୍ତି ପରଖି ।"

ଶ୍ରୀ ମଦ୍ଭାଗବତ ବର୍ଣ୍ଣନା ଅନୁସାରେ ଈଶ୍ୱର ହେଉଛନ୍ତି "ଅଖଣ୍ଡ ମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରଂ" ଅର୍ଥାତ୍ ଈଶ୍ୱର ହେଉଛନ୍ତି ଏକ ଗୋଲାକାର ବସ୍ତୁ ବା ବୃତ୍ତ ସଦୃଶ ଯାହାର ଆଦି ନାହିଁ କି ଅନ୍ତ ନାହିଁ ବା ସେ କେଉଁଠାରୁ ଆରମ୍ଭ ବା କେଉଁଠାରେ ଶେଷ ହୋଇଛି ଜାଣି ହୁଏ ନାହିଁ । ସେ ଚରାଚର ସବୁଠାରେ ରହିଛନ୍ତି । ଏଥିରୁ ସ୍ପଷ୍ଟରୂପେ ପ୍ରତୀୟମାନ ହୁଏ ଯେ ଈଶ୍ୱର ନିରାକାର ହୋଇ ମଧ୍ୟ ସର୍ବବ୍ୟାପୀମାନ୍, ସର୍ବଶକ୍ତିମାନ୍ ଓ ସର୍ବଜ୍ଞ ।

(କ) **ପାପ**—ତେଣୁ କୌଣସି ମନ୍ଦ କର୍ମ ବା ପାପ କର୍ମ କର ନାହିଁ । ଯଦି କେବେ କିଛି ନିଜର ଜ୍ଞାତସାରରେ ବା ଅଜ୍ଞାତସାରରେ କରି ପକାଅ ତେବେ ତାହାକୁ ଈଶ୍ୱରଙ୍କର ଦୃଷ୍ଟିରୁ ଲୁଚାଇବା ପାଇଁ ଚେଷ୍ଟା କରନାହିଁ, ଛଳନା କର ନାହିଁ କିମ୍ବା ମିଥ୍ୟା କୁହ ନାହିଁ । କାରଣ ତଦ୍ୱାରା ତୁମେ ଆଉ ଗୋଟିଏ ପାପ ବା ଦୋଷ କରୁଛ ବୋଲି ଈଶ୍ୱରଙ୍କର ଦୃଷ୍ଟିରେ ବିବେଚିତ ହେବ । ଯାହାକି ଏକ ଆତ୍ମଘାତୀ କାର୍ଯ୍ୟ । ଯେ ଯାହା କରେ, କହେ ବା ଭାବେ ଈଶ୍ୱର ତାହା ସବୁ ତତ୍‌କ୍ଷଣାତ୍ ଜାଣିପାରନ୍ତି । ଆମେ କିଛି ପଚାରିଲା ପରି ସେ ଆମ ମନକୁ ପଢ଼ି ପାରନ୍ତି । ଏ ପ୍ରସଙ୍ଗରେ ପିଲାଦିନର ଛୋଟ ପାଠରୁ ପଦଟିଏ ମନେ ପଡ଼ୁଛି ।

ଯଥା :— "ଯାହା ମୁଁ କରଇ                    ଯାହା ମୁଁ କହଇ
ଯାହା ମୁଁ ଚିନ୍ତଇ ମନେ
ଜଗତର କର୍ତ୍ତା                    ପରମ ଈଶ୍ୱର
ଜାଣୁଛନ୍ତି ପ୍ରତିକ୍ଷଣେ ।"

Digitized by srujanika@gmail.com

ଏହି ବିଶ୍ୱାସ ହୃଦୟରେ ଦୃଢ ହେଲେ କୌଣସି ପାପ କର୍ମ କରିବା ଲାଗି ମନ ବଳିବ ନାହିଁ ।

ପାପ କ'ଣ ? ପରର ଅନିଷ୍ଟ ବା ମନ୍ଦ କରିବା ହେଉଛି ପାପ । ମନରେ ସେପରି ଚିନ୍ତା କରିବା ମଧ୍ୟ ପାପ ।

ଶ୍ରୀମଦ୍‌ଭାଗବତ କହେ :—

"ସକଳ ଘଟେ ନରହରି । ବସଇ ଆତ୍ମା ରୂପ ଧରି ॥
ସମେ ବସଇ ସର୍ବ ଦେହେ । ମୂଢ ନ ଜାଣେ ମାୟାମୋହେ ॥

× × ×

ସକଳ ଦେହେ ନାରାୟଣ । ବସନ୍ତି ଅନାଦି କାରଣ ।" ଇତ୍ୟାଦି ।

ଆତ୍ମା ହେଉଛି ସର୍ବବ୍ୟାପୀ । ଈଶ୍ୱର ସର୍ବଘଟରେ ଆତ୍ମା ସ୍ୱରୂପ ବିଦ୍ୟମାନ । ତେଣୁ ପରର ଅନିଷ୍ଟ କରିବା ଈଶ୍ୱରଙ୍କର ଅନିଷ୍ଟ କରିବା ସଙ୍ଗେ ସମାନ ।

ଆଉ ମଧ୍ୟ ମନର ବିକାର ହେଉଛି ପାପ । ବିକାର କ'ଣ ? କୌଣସି କୁକର୍ମ ବା ପାପ କରିବା ପୂର୍ବରୁ ମନରେ ଯେଉଁ ଭୟ, ଆଶଙ୍କା, ଦ୍ୱିଧା ଜନ୍ମେ ଏବଂ ବିବେକ ପ୍ରଥମତଃ ଯାହା କରିବାପାଇଁ ବାରଣ କରେ ତାହାହିଁ ହେଉଛି ବିକାର । କିନ୍ତୁ ପରମୁହୂର୍ତ୍ତରେ କାମ, କ୍ରୋଧ, ଲୋଭ ଓ ମୋହ ଆଦି ରିପୁମାନଙ୍କର କବଳିତ ହୋଇ ସେହି ସବୁ କୁକର୍ମ ମନୁଷ୍ୟ କରି ପକାଇଥାଏ, ଯାହାର ଅନ୍ୟ ନାମ ହେଉଛି ପାପ ।

(ଖ) **ପ୍ରାୟଶ୍ଚିତ**—ପାପର ପ୍ରାୟଶ୍ଚିତ ହେଉଛି ଅନୁତାପ । ନିଜକୁ ସଂଶୋଧନ ନ କରି ବାରବାର ଅନୁତାପ କଲେ କିଛି ଲାଭ ହୁଏ ନାହିଁ । ତାହା ଠିକ୍ କଣା ମାଠିଆରେ ପାଣିପୂରାଇଲା ପରି । ନିଜର ପାପକର୍ମ ପାଇଁ ଈଶ୍ୱରଙ୍କ ନିକଟରେ କ୍ଷମା ଭିକ୍ଷା କର । ସେଥିପାଇଁ ଅନୁତାପ କରିବା ସଙ୍ଗେ ସଙ୍ଗେ ନିଜକୁ ସଂଶୋଧନ କର । ମନେରଖ, କ୍ଷୁଦ୍ରଋଣ ବା ବୃହତ୍‌ଋଣ ଉଭୟହିଁ ଋଣ, କ୍ଷୁଦ୍ର ସର୍ପ ବା ବୃହତ୍ ସର୍ପ ଉଭୟ ହିଁ ସର୍ପ, ସ୍ଫୁଲିଙ୍ଗ ବା

Digitized by srujanika@gmail.com

ଦାବାନଳ ଉଭୟପୂର୍ଣ୍ଣ ଅଗ୍ନି ଏବଂ କ୍ଷୁଦ୍ର ରୋଗ ଓ ବୃହତ୍ ରୋଗ ଉଭୟପୂର୍ଣ୍ଣ ରୋଗ । ସେହିପରି କ୍ଷୁଦ୍ର ପାପ ଓ ବୃହତ୍ ପାପ ଉଭୟପୂର୍ଣ୍ଣ ପାପ । କ୍ଷୁଦ୍ରାବସ୍ଥାରୁ ଏହାକୁ ବିନାଶ ନକରି ଲୁଚାଇ ରଖିଲେ ଏହା ଭବିଷ୍ୟତରେ ବୃହତ୍ ରୂପ ଧରି ମନୁଷ୍ୟକୁ କାବୁକରି ଦେବ । ପାପଯୁକ୍ତ ମନହିଁ ଧରାର ନର୍କ ଓ ପାପ ମୁକ୍ତ ମନହିଁ ଧରାର ବୈକୁଣ୍ଠ ।

ନିଜର ଚିତ୍ତକୁ ସଦାସର୍ବଦା ସରଳ ଓ ନିର୍ମଳ ରଖିବା ଉଚିତ । କାରଣ ଦୁଇ ବିନ୍ଦୁ ମଧ୍ୟରେ ଯେତେ ରେଖା ଟଣାଯିବ ତା ମଧ୍ୟରୁ ସବୁଠାରୁ ଶ୍ରେଷ୍ଠ ହେବ ସରଳ ରେଖାଟି ବା ସରଳ ରେଖାର ଦୂରତ୍ୱ ହେବ ସବୁଠାରୁ କମ୍ । ଏହାକୁ ଅତିକ୍ରମ କରିବା ପାଇଁ ସବୁଠାରୁ କମ୍ ସମୟ ଓ ଶ୍ରମ ଦରକାର ହୁଏ । ସିଧା ବାଟଟି ସବୁଠାରୁ କମ୍ ବୋଲି ଗଣିତ ତଥା ମାନ୍ତିଶାସ୍ତ୍ର ଉଭୟ କହନ୍ତି । ତେଣୁ ଈଶ୍ୱରଙ୍କୁ ସର୍ବଦା ପ୍ରାର୍ଥନା କରି କୁହ, "ହେ ପ୍ରଭୁ . ମୋର ବାହାରଟା କେବଳ ନୁହଁ ମୋର ଭିତରଟା କରେ ସରଳ, ସୁନ୍ଦର ଓ ନିର୍ମଳ କର ।"

ମନ ସରଳ ନ ହେଲେ ଈଶ୍ୱର ମିଳନ୍ତି ନାହିଁ । ଏହି ପ୍ରସଙ୍ଗରେ ଶ୍ରୀମଦ୍ଭାଗବତ ଏକାଦଶ ସ୍କନ୍ଧରେ ଭଗବାନ କହିଛନ୍ତି .—

ଦାମ୍ଭିକ ନାସ୍ତିକ କପଟୀ । କୁଟିଳ ବିଷୟୀ ଲମ୍ପଟି ।।
ଭକତି ଶୂନ୍ୟ ମତି ହୀନ । ରଜ, ତାମସ ଯୁକ୍ତ ଜନ ।।
ତାଙ୍କୁ ଏ ଧର୍ମ ନ କହଇ । ଶୁଣ ଉଦ୍ଧବ ମନ ଦେଇ ।।

(ବିଂଶ ଅଧ୍ୟାୟ)

ଅର୍ଥାତ୍ କୁଟିଳ, ବିଷୟୀ ପ୍ରାଣୀ ମନରେ ଈଶ୍ୱର ବିଶ୍ୱାସ ଜାଗ୍ରତ ହୁଏ ନାହିଁ । ତେଣୁ ସେମାନେ ଈଶ୍ୱରଙ୍କୁ ଲାଭ କରିପାରନ୍ତି ନାହିଁ ବା ମୋକ୍ଷପ୍ରାପ୍ତ ହୁଅନ୍ତି ନାହିଁ ।

୨ । **ବୈରାଗ୍ୟ** — ଈଶ୍ୱରଙ୍କର କୃପାଲାଭ କରିବାକୁ ହେଲେ ତୀବ୍ର ବୈରାଗ୍ୟ ସାଧନ ଆବଶ୍ୟକ । ବୈରାଗ୍ୟ କ'ଣ ? ବିଷୟ ବିତୃଷ୍ଣାର ନାମ ହେଉଛି ବୈରାଗ୍ୟ । ଇନ୍ଦ୍ରିୟଙ୍କୁ ଦମନ ନ କଲେ ବିଷୟ ପ୍ରତି ବିତୃଷ୍ଣା

Digitized by srujanika@gmail.com

ଜନ୍ମେ ନାହିଁ କି ବିଷୟ ବାସନା ଦୂର ହୁଏ ନାହିଁ । ତେଣୁ କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ଏହି ଷଡ଼ରିପୁଙ୍କୁ ଦମନ କରିବା ଏବଂ ସେମାନଙ୍କ ଠାରୁ ଦୂରେଇ ରହିବା ଉଚିତ । ତେବେ ଯାଇ ବିଷୟ ବାସନା ହୃଦୟରୁ ଦୂର ହୋଇ ପାରିବ । ନିଜ ପ୍ରତି ହେଉ ବା ସଂସାର ପ୍ରତି ହେଉ ଯେ ପର୍ଯ୍ୟନ୍ତ ମନୁଷ୍ୟର ଲୋଭ, ମୋହ ଥିବ ଈଶ୍ୱର ସେ ପର୍ଯ୍ୟନ୍ତ ତାଠାରୁ ଦୂରରେ ଥିବେ । ବିଷୟ ହେଉଛି ବିଷଠାରୁ ଅଧିକ ଉତ୍କଟ । କାରଣ ବିଷ ଖାଇବା ପରେ ମନୁଷ୍ୟ ମରେ, କିନ୍ତୁ ବିଷୟକୁ ମାତ୍ର ଦେଖି ଦେଖି ମନୁଷ୍ୟ ମରିଥାଏ ।

ସକଳ ବିଷୟେ ଯେବେ ଆସିବ ବିରାଗ,
ଜାଣିବ ତେବେ ଏ ଜୀବ ହୋଇଛି ସଜାଗ ।'

ପ୍ରଚଣ୍ଡ ସୂର୍ଯ୍ୟ କିରଣ ଯେପରି ମରୁଭୂମି ସୃଷ୍ଟି କରେ ପ୍ରଚଣ୍ଡ ସମ୍ପଦ ବା ବିଷୟ ସେହିପରି ସର୍ବନାଶର କାରଣ ହୁଏ । ଅତି ସମ୍ପଦ ଅଟେ ବଡ ବିଷମ । ଏଥିରେ ପ୍ରକୃତ ସୁଖ ଓ ଶାନ୍ତି ମିଳିପାରେ ନାହିଁ । ଧନମୋହରେ ମାତି ମନୁଷ୍ୟ ସେହି ଧନଦାତା ଈଶ୍ୱରଙ୍କୁ ଭୁଲିଯାଏ । ତେଣୁ ଈଶ୍ୱର ତାକୁ ମଧ୍ୟ ଭୁଲିଯାନ୍ତି ।

ଶ୍ରୀମଦ୍ଭାଗବତ ଏକାଦଶ ସ୍କନ୍ଦରେ ଭଗବାନ କହିଛନ୍ତି—

"ମୋ ନାମ ମୁଖେ ଅବା ଜପେ । ହରଷେ କଅବା ବିଳାପେ ॥
ସେ ପ୍ରାଣୀ ମୋହର ବିଶ୍ୱାସ । ତାହାଙ୍କୁ ଦେଇ ଉପଦେଶ ॥
(ତ୍ରିଂଶ ଅଧ୍ୟାୟ)

ଯେ ସୁଖ ଓ ଦୁଃଖ ଉଭୟ ଅବସ୍ଥାରେ ଭଗବାନଙ୍କୁ ଡାକେ ସେ ହେଉଛି ତାଙ୍କର ଭକ୍ତ । ଭଗବାନ ତାହାର ଡ଼ାକ ଶୁଣନ୍ତି । ବିଷୟ ବା ଧନ କିପରି ଓ କାହିଁକି ବିନାଶର କାରଣ ହୁଏ ତାହା ମଧ୍ୟ ଶ୍ରୀମଦ୍ଭାଗବତରେ ବର୍ଣ୍ଣିତ ହୋଇଅଛି । ଯଥା—

"ଅର୍ଜନ ସାଧନ ସଞ୍ଚୟ । ଧନ ସେ ସର୍ବ ଦୁଃଖମୟ ॥
ଚୋରି ମିଥ୍ୟା ହିଂସା ଦମ୍ଭ । ବଇର ଛିଦ୍ର ମନ୍ଦ ଭାବ ॥
କ୍ରୋଧ କୁଟିଳ ଅବିଶ୍ୱାସ । ଶ୍ରଦ୍ଧା ବ୍ୟସନ ଯେ ବିଶେଷ ॥
ଏ ପଞ୍ଚଦଶ ଦୋଷ ଧନେ । ଏଣୁ ପଣ୍ଡିତ ସାଧୁ ଜନେ ॥

Digitized by srujanika@gmail.com

ଧନ ସଞ୍ଚୟ ଦୂର କର । ଜପୂତ କର୍ମକୁ ଆଦର ।।
ଧୀରେ ଉହନ୍ତି ଶୁଦ୍ଧ ଚିତ୍ତେ । ଧନ୍ୟ ଜୀବନ ଏ ଜଗତେ ।।

(ଚତୁର୍ଦ୍ଦଶ ଅଧ୍ୟାୟ)

ଶ୍ରୀମଦ୍‌ଭଗବଦ୍ ଗୀତାରେ ମଧ୍ୟ ସେହିପରି, ଯଥା—

"ଧ୍ୟାୟତୋ ବିଷୟାନ୍ ପୁଂ-ସଃ ସଙ୍ଗସ୍ତେଷୂ ପଜାୟତେ,
ସଙ୍ଗାତ୍ ସଞ୍ଜାୟତେ କାମଃ କାମାତ୍ କ୍ରୋଧୋଭିଜାୟତେ,
କ୍ରୋଧାଦ୍ଭବତି ସମ୍ମୋହ ସମ୍ମୋହାତ୍ ସ୍ମୃତିବିଭ୍ରମଃ
ସ୍ମୃତି ଭ୍ରଂଶାଦ୍ ବୁଦ୍ଧି ନାଶୋ ବୁଦ୍ଧିନାଶାତ୍ ପ୍ରଣଶ୍ୟତି ।"

(ଦ୍ୱିତୀୟ ଅଧ୍ୟାୟ-ଶ୍ଳୋ ୬୨-୬୩ କ)

ଅର୍ଥାତ୍ ବିଷୟରୁ ଆସକ୍ତି, ଆସକ୍ତିରୁ କାମ, କାମରୁ କ୍ରୋଧ, କ୍ରୋଧରୁ ଅବିବେକ, ଅବିବେକରୁ ସ୍ମୃତିଭ୍ରମ ଓ ସ୍ମୃତିଭ୍ରମରୁ ପରିଶେଷରେ ବୁଦ୍ଧି ନାଶ ଓ ସର୍ବନାଶ ହୁଏ । ତେଣୁ ବଞ୍ଚି ରହିବା ପାଇଁ ମନୁଷ୍ୟର ଯେତିକି ମାତ୍ର ଧନ ଆବଶ୍ୟକ ସେତିକି ହେଉଛି ଯଥେଷ୍ଟ । ମନୁଷ୍ୟ ବଞ୍ଚିବା ପାଇଁ ଖାଉ, କିନ୍ତୁ ଖାଇବା ପାଇଁ ନ ବଞ୍ଚୁ । ଧନ ବା ବିଷୟ ପ୍ରତି ଏହି ରୂପ ବୈରାଗ୍ୟ ଆସିଲେ ଈଶ୍ୱର ବିଶ୍ୱାସ ହୃଦୟରେ ଜନ୍ମେ ଓ ଈଶ୍ୱର ମିଳନ୍ତି ।

ଆସକ୍ତି ଓ ଅହଂକାର ଏ ଦୁହେଁ ଈଶ୍ୱରଙ୍କୁ ଲାଭ କରିବା ପଥରେ ପ୍ରଧାନ କଣ୍ଟକ ଓ ଅନ୍ତରାୟ ଅଟନ୍ତି । ମୁଁ ଓ ମୋର ଏବଂ ତୁ ଓ ତୋର ଏହି ମୋହ ଏ ସଂସାରକୁ ଗ୍ରାସ କରିଛି । ଏହାର କବଳରେ ପଡି ମନୁଷ୍ୟ ଯାହା କିଛି କର୍ମ କରୁଛି ତାହା କେବଳ ନିଜର ଶରୀର ପୁଷ୍ଟି ଓ ସ୍ୱାର୍ଥସିଦ୍ଧି ପାଇଁ । କିନ୍ତୁ ଆତ୍ମା ପାଇଁ ସେ କିଛି କରି ପାରୁ ନାହିଁ । ଯାହା ଚିରସତ୍ୟ ଓ ଶାଶ୍ୱତ ତାକୁ ଛାଡ଼ି ଯାହା ଅସତ୍ୟ ଓ ଅନିତ୍ୟ ତାହାରି ପଛରେ ମନୁଷ୍ୟ ବୃଥାରେ ଅହରହ ଧାଇଁଛି । ତେଣୁ ଏହି ଆସକ୍ତି ଓ ଅହଙ୍କାର ଠାରୁ ଦୂରରେ ନ ରହିଲେ ଈଶ୍ୱର ପ୍ରାପ୍ତି ବା ଆତ୍ମାର ମୁକ୍ତି ସହଜସାଧ୍ୟ ଓ ସମ୍ଭବପର ହୋଇପାରେ ନାହିଁ । ଭଗବତ୍ କୃପାହିଁ ଭଗବାନଙ୍କୁ ଲାଭ କରାଏ, ଏକଥା

Digitized by srujanika@gmail.com

ଠିକ୍ । ଶ୍ରୀମଦ୍ଭାଗବତ ଏକାଦଶ ସ୍କନ୍ଧରେ ଉଲ୍ଲେଖ ଅଛି ଯେ —

"ସେ ପାଦ ଯାକୁ ଦୟା କରେ । ଭକ୍ତି ଜନ୍ମଇ ତା ହୃଦରେ ॥
ଘୋର କଳୁଷ ଦେହୁ ନାଶେ । ନିର୍ମଳ ହୃଦୟ ପ୍ରକାଶେ ॥
ଦର୍ପଣେ ପ୍ରତିବିମ୍ବ ଯେହ୍ନେ । ବ୍ରହ୍ମ ପ୍ରକାଶେ ତାର ମନେ ॥"

(ଚତୁର୍ଥ ଅଧ୍ୟାୟ)

କିନ୍ତୁ ଏ କଥା ମଧ୍ୟ ଠିକ୍ ଯେ ନିଜର ପ୍ରଗାଢ଼ ଆତ୍ମବିଶ୍ୱାସ ବିନା ଈଶ୍ୱରଙ୍କୁ ଲାଭ କରି ହୁଏ ନାହିଁ । ଏ ପ୍ରସଙ୍ଗରେ ଗୋଟିଏ ସୁନ୍ଦର ଓ ଶିକ୍ଷଣୀୟ ଉଦାହରଣ ଏଠାରେ ଉଲ୍ଲେଖଯୋଗ୍ୟ—

"ଏକଦା ଦୁଇଜଣ ସାଧକ ମୁକ୍ତିଲାଭ ପାଇଁ ସାଧନା କରୁଥିଲେ । ଏହିପରି ବହୁ ଯୁଗ ବିତିଗଲା, ସେମାନେ ଈଶ୍ୱରଙ୍କୁ ପାଇ ପାରିଲେ ନାହିଁ । ଦିନେ ନାରଦ ସେମାନଙ୍କ ବାଟ ଦେଇ ବୈକୁଣ୍ଠକୁ ଯାଉଥିଲେ । ସେ ଦୁହେଁ ତାଙ୍କୁ ଦେଖି ଅନୁରୋଧ କରି କହିଲେ, "ମହର୍ଷି ! ଦୟାକରି ଈଶ୍ୱରଙ୍କୁ ପଚାରିବେ ମୁକ୍ତି ଲାଭ କରିବା ପାଇଁ ଆମକୁ ଆଉ କେତେ ଯୁଗ ଏହିପରି ସାଧନା କରିବାକୁ ପଡ଼ିବ ।" କେତେ କାଳ ପରେ ନାରଦ ସେହି ବାଟ ଦେଇ ବୈକୁଣ୍ଠପୁରରୁ ଫେରିଲେ । ତାଙ୍କୁ ଫେରିବାର ଦେଖି ପ୍ରଥମ ସାଧକ ପଚାରିଲେ ମହର୍ଷି ! ଈଶ୍ୱର ମୋ କଥା କଣ କହିଲେ ?" ନାରଦ ଉତ୍ତର ଦେଲେ 'ତୁମ୍ଭଙ୍କୁ ଏଥିପାଇଁ ଆହୁରି ଆଠଜନ୍ମ ତପସ୍ୟା କରିବାକୁ ପଡ଼ିବ ବୋଲି ଈଶ୍ୱର କହିଲେ ।' ଏ କଥା ଶୁଣି ସେହି ସାଧକ ହତାଶ ହୋଇପଡ଼ିଲେ । ତାଙ୍କର ମନ ବଳ ଭାଙ୍ଗି ପଡ଼ିଲା । ସେ ଆଉ ସାଧନା କରିପାରିଲେ ନାହିଁ । ତା ପରେ ଦ୍ୱିତୀୟ ସାଧକ ନାରଦଙ୍କୁ ଦେଖି ସେହିପରି ମଧ୍ୟ ପ୍ରଶ୍ନ କଲେ । ନାରଦ ନିକଟରେ ଥିବା ଏକ ତେନ୍ତୁଳି ଗଛକୁ ଦେଖାଇ କହିଲେ, "ଏହି ତେନ୍ତୁଳି ଗଛରେ ଯେତେ ପତ୍ର ଅଛି ତୁମେ ସେତିକି ଜନ୍ମ ଆଉ ତପସ୍ୟା କଲେ ମୁକ୍ତି ପାଇପାରିବ ବୋଲି ଈଶ୍ୱର କହିଲେ ।" ଏହା ଶୁଣି ସେହି ସାଧକ ଆନନ୍ଦରେ ଉତ୍ଫୁଲ୍ଲ ହୋଇଗଲେ । ଯେତେ ଜନ୍ମ ଲାଗୁ ପଛେ ସେ ତପସ୍ୟା ବଳରେ ମୁକ୍ତିଲାଭ କରିବେ ଏହି ଆତ୍ମବିଶ୍ୱାସ ତାଙ୍କର ଅଧିକ

Digitized by srujanika@gmail.com

ଦୃତୀଭୂତ ହେଲା ଓ ଈଶ୍ୱର ବିଶ୍ୱାସ ଅଧିକ ନିବିଡ ହେଲା । ଅନ୍ତର୍ଯ୍ୟାମୀ ପରମେଶ୍ୱର ଏହା ଜାଣିପାରି, ତାଙ୍କ ଭକ୍ତି ଓ ବିଶ୍ୱାସରେ ସନ୍ତୁଷ୍ଟ ହୋଇ ତତ୍‌କ୍ଷଣାତ୍ ଶୂନ୍ୟବାଣୀ ଦ୍ୱାରା ତାଙ୍କୁ ମୁକ୍ତି ପ୍ରଦାନ କଲେ ।"

ପ୍ରଗାଢ ଚେଷ୍ଟା ଓ ଅଧ୍ୟବସାୟ ବଳରେ ଈଶ୍ୱରଙ୍କର କୃପା କିପରି ଲାଭ ହୋଇପାରେ ତାହାର ଗୋଟିଏ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା—

"ଏକଦା ଦୁଇଟି ପକ୍ଷୀ ସମୁଦ୍ର କୂଳରେ ବାସ କରୁଥିଲେ । ଗୋଟିଏ ଅଣ୍ଡିରା ଓ ଗୋଟିଏ ମାଈ । ଥରେ ସେମାନେ ଦୁଇଟି ଅଣ୍ଡା ଦେଲେ । ଦିନକର ସେ ଦୁହେଁ ସେହି ଅଣ୍ଡା ଦୁଇଟିକୁ ସମୁଦ୍ର କୂଳ ବାଲିରେ ଲୁଚାଇ ଦେଇ ଆହାର ଖୋଜିଗଲେ । କିନ୍ତୁ ଫେରିଆସି ଦେଖିଲେ ଯେ ସମୁଦ୍ର ଢେଉ ତାଙ୍କର ସେହି ଅଣ୍ଡା ଦୁଇଟିକୁ ଭସାଇ ନେଇଛି । ଏହା ଦେଖି ସେ ଦୁହେଁ ବଡ ବ୍ୟାକୁଳ ହୋଇପଡ଼ିଲେ । ତେଣୁ ସେ ନିଜର ଥଣ୍ଟରେ ସମୁଦ୍ର ଜଳକୁ ଶୋଷି ସମୁଦ୍ରକୁ ଶୁଖାଇ କିପରି ତାଙ୍କର ସେହି ଅଣ୍ଡା ଦୁଇଟିକୁ ଫେରି ପାଇବେ ଏହି ଚେଷ୍ଟାରେ ନ ଖାଇ ନ ପିଇ ଦିନରାତି ଲାଗି ପଡ଼ିଲେ । କ୍ଷୁଦ୍ର ପକ୍ଷୀ ଦୁଇଟିଙ୍କର ଏପରି ପ୍ରଗାଢ ଚେଷ୍ଟା ଓ ଅସାଧାରଣ ଅଧ୍ୟବସାୟରେ ସମୁଦ୍ର ରାଜା "ବରୁଣ" ଦେବତା ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କର ଅଣ୍ଡା ଦୁଇଟି ତାଙ୍କୁ ଫେରାଇ ଦେଲେ ।"

ଯଦି ଈଶ୍ୱର କେବେ କାହାର କିଛି ଯାଚଞ୍ଚା ପୂରଣ ନ କରନ୍ତି ତେବେ ତାଙ୍କଠାରେ ଦୋଷାରୋପ ନ କରି ଏହାକୁ ନିଜର ଦୋଷ ରୂପେ ବିବେଚନା କରିବା ଉଚିତ୍ । କାରଣ ଈଶ୍ୱର ହେଉଛନ୍ତି ମଙ୍ଗଳମୟ । ସେ ଯାହା କରନ୍ତି ସବୁ ପ୍ରାଣୀଙ୍କ ମଙ୍ଗଳ ପାଇଁ । ତାଙ୍କର ଐଶ୍ୱରିକ ବିଚାରବୁଦ୍ଧି ବଳରେ ସେ ଯାହାକୁ ଯାହା ଦେବାର କଥା ଦେଇଥାନ୍ତି । ତେଣୁ କଥାରେ ଅଛି "ମାଠିଆରେ ସମୁଦ୍ରରୁ ପାଣି ଆଣିଲେ ସେତିକି କୂଅରୁ ପାଣି ଆଣିଲେ ସେତିକି ।" କର୍ମ ଅନୁସାରେ ସେ ଫଳ ଦେଇଥାନ୍ତି । ତାଙ୍କ ନିକଟରେ ବଡ଼ ସାନ ଭେଦାଭେଦ ନାହିଁ । ସମସ୍ତେ ସମାନ । ସେ ହେଉଛନ୍ତି ବିଶ୍ୱପିତା ।

Digitized by srujanika@gmail.com

ତେଣୁ ତାଙ୍କ ନିକଟରେ ଜଗତର ସମସ୍ତ ଜୀବ ତାଙ୍କର ସନ୍ତାନ ସଦୃଶ । ଶ୍ରୀମଦ୍ଭାଗବତର ଏକାଦଶ ସ୍କନ୍ଧରେ ଭଗବାନ କହିଛନ୍ତି—

"ମୁଁ ସର୍ବ ଆତ୍ମା ଅଧିଶ୍ୱର
ମୋହର ନାହିଁ ପରାପର ।"

(ଷୋଡ଼ଶ ଅଧ୍ୟାୟ)

ଏହି ପ୍ରସଙ୍ଗରେ ଜଣେ ଭକ୍ତ କହନ୍ତି, ହେ ପ୍ରଭୁ । ଯେ ଯାହା ତୁମ୍ଭଙ୍କୁ ମାଗେ ତୁମ୍ଭେ ସେ ସବୁ ତାକୁ ନ ଦେଇ ଜଗତର ଅଶେଷ ମଙ୍ଗଳ କରୁଛ । ତା ନ ହେଲେ ଖଳ ଓ ମନ୍ଦ ପ୍ରକୃତିର ଲୋକେ ଜଗତର ଅଶେଷ ଅମଙ୍ଗଳ ସାଧନ କରୁଥାନ୍ତେ । ବାସ୍ତବିକ ଏହା ଅକ୍ଷରେ ଅକ୍ଷରେ ସତ୍ୟ । ଈଶ୍ୱରଙ୍କର କୃପାର ଉପକାରିତା କେତେକ ସ୍ଥଳରେ ତତ୍‌କ୍ଷଣାତ୍ ଅନୁଭୂତ ନ ହେଲେ ମଧ୍ୟ ଏହାର ପରିଣାମ ଯେ ସୁଦୂର ପ୍ରସାରି ଏଥିରେ ସନ୍ଦେହର ଅବକାଶ ନାହିଁ ।

୩ । **ଭକ୍ତି** —ଈଶ୍ୱର ହେଉଛନ୍ତି ଅଶେଷ ଓ ଅସୀମ ଶକ୍ତିର ଉତ୍ସ ବା କେନ୍ଦ୍ର । ମନୁଷ୍ୟ ନିଜର ଶକ୍ତି, ସାଧନା, ସଂଯମ ଓ ଭକ୍ତି ଅନୁସାରେ ସେହି ଶକ୍ତି ବା କୃପା ତାଙ୍କ ନିକଟରୁ ଆହରଣ କରିଥାଏ । ଯେପରିକି ବିଜୁଳିବତୀ ନିଜର ଶକ୍ତି ଅନୁଯାୟୀ ବିଦ୍ୟୁତ୍ କେନ୍ଦ୍ରର ଆଲୋକ ଗ୍ରହଣ କରିଥାଏ । ତେଣୁ ଈଶ୍ୱରଙ୍କ ନିକଟରୁ ତାଙ୍କ ଶକ୍ତିର ସାମାନ୍ୟ ଅଂଶ ଲାଭ କରିବାକୁ ହେଲେ ଏକ-ନିଷ୍ଠ ସାଧନା, ସଂଯମ ଓ ଭକ୍ତି ବଳରେ ନିଜର ଆଧ୍ୟାତ୍ମିକ ଶକ୍ତି ବଢାଇବା ବିଧେୟ ।

ଶ୍ରୀମଦ୍‌ଭଗବଦ୍ ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି—

"ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଂ ଚ ମୟି ପଶ୍ୟତି,
ତସ୍ୟାହଂ ନ ପ୍ରଣଶ୍ୟାମି ସ ଚ ମେ ନ ପ୍ରଣଶ୍ୟତି ।"

(ଷଷ୍ଠ ଅଧ୍ୟାୟ-ଶ୍ଳୋ ୩୦ କ)

Digitized by srujanika@gmail.com

ଏହାର ଇଂରାଜୀ ଅନୁବାଦ ହେଲା —

"He who seeth Me every where
and seeth every Thing in Me,
Of him I shall never loose hold
and he will never loose hold of Me."

ଅର୍ଥାତ୍ ଯେ ମୋତେ ସର୍ବ ସ୍ଥାନରେ ଓ ସର୍ବ ଘଟରେ ଦେଖେ ଏବଂ ମୋ ଭିତରେ ସବୁ କିଛି ଦେଖେ ମୁଁ ତାହାଠାରୁ କେବେହେଁ ବିଚ୍ଛିନ୍ନ ହୁଏ ନାହିଁ ।

ଶ୍ରୀମଦ୍ଭାଗବତରେ ମଧ୍ୟ ସେହିପରି ଯଥା —

"ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗୀନାଂ ହୃଦୟେ ନ ଚ
ମଦ୍ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ।"

ଅର୍ଥାତ୍ ମୁଁ ବୈକୁଣ୍ଠରେ ନଥାଏ କି ଯୋଗୀ, ଋଷିମାନଙ୍କ ହୃଦୟରେ ନ ଥାଏ । ମୋର ଭକ୍ତ ମୋର ନାମ ଯେଉଁଠାରେ ଗାନ କରେ ମୁଁ ସେହିଠାରେ ବା ମୋ ଭକ୍ତ ପାଖରେ ଥାଏ ।

ଭଗବାନ ହେଉଛନ୍ତି ଭକ୍ତବତ୍ସଳ, ଭକ୍ତ ବନ୍ଧୁ ଓ ଭକ୍ତାଧୀନ । ଯେ ତାଙ୍କୁ ଏକନିଷ୍ଠ ଚିତ୍ତରେ ଡାକେ ଓ ନିଜକୁ ତାଙ୍କ ନିକଟରେ ସଂପୂର୍ଣ୍ଣ ସମର୍ପଣ କରେ ସେ ତାହାର ଅଭିଳାଷ ପୂରଣ କରନ୍ତି ଓ ତାର ଦୁଃଖମୋଚନ କରନ୍ତି ।

ଶ୍ରୀମଦ୍ଭଗବଦ୍ ଗୀତାରେ ଭଗବାନ କହିଛନ୍ତି—

"ମନ୍ମନା ଭବ ମଦ୍ଭକ୍ତୋ ମଦ୍ୟାଜୀ ମାଂ ନମସ୍କୁରୁ,
ମାମେବୈଷ୍ୟସି ଯୁକ୍ତ୍ୱୈବମାତ୍ମାନଂ ମତ୍ପରାୟଣଃ ।"

(ନବମ ଅଧ୍ୟାୟ—ଶ୍ଳୋକ ୩୪ ନଂ)

ଅର୍ଥାତ୍ ଯେ ମନ, ଧ୍ୟାନ ଓ ଭକ୍ତି ସହିତ ମୋର ପୂଜା କରେ ସେ ମୋତେ ଲାଭ କରେ । ସେ ପୁଣି କହିଛନ୍ତି—

Digitized by srujanika@gmail.com

"ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ,
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।"
(ଅଷ୍ଟାଦଶ ଅଧ୍ୟାୟ—ଶ୍ଳୋ । ୬୬ କ)

ଅର୍ଥାତ୍ ଯେ ସବୁ ଧର୍ମ ଛାଡି ମୋ ନିକଟରେ ଶରଣାପନ୍ନ ହୁଏ ମୁଁ ତାହାର ସମସ୍ତ ଭୟ ନାଶ କରେ ଓ ସମସ୍ତ ପାପମୋଚନ କରେ ।

ଏହି ପ୍ରସଙ୍ଗରେ ମଧ୍ୟ ଶ୍ରୀମଦ୍‌ଭାଗବତ ଏକାଦଶସ୍କନ୍ଧସ୍ଥିତ ଭଗବାନଙ୍କର ବହୁ ଅମୂଲ୍ୟବାଣୀ ମଧ୍ୟରୁ କେତେଗୋଟି ମାତ୍ର ନିମ୍ନରେ ପ୍ରଦତ୍ତ ହେଲା—

"ସର୍ବ ସଙ୍କଳ୍ପ ଛାଡ଼ି ତୁହି । ସକଳ କର୍ମ ମୋତେ ଦେଇ ।।
ଏକାନ୍ତେ ଥାଇ ଭଜ ମୋତେ । ସଂସାର ଚିନ୍ତା ଛାଡ଼ି ଚିତ୍ତେ ।।
ମୋର ବଚନ ଅନୁସର । ଏ ଭବ ଜଳୁ ହେବୁ ପାର ।।
(ସପ୍ତଦଶ ଅଧ୍ୟାୟ)

ଯେତେ ଏ ଦାନ ବ୍ରତ ତ୍ୟାଗ । ଧର୍ମ ଅଷ୍ଟାଙ୍ଗ ସାଂଖ୍ୟ ଯୋଗ ।।
ଏ ମୋତେ ନ ପାରନ୍ତି ଧରି । ନାନାପ୍ରକାରେ ବଶ କରି ।।
ଭକତ ଜନେ ବଶ ମୁହିଁ । ତାର ଭକ୍ଷଣେ ମୋର ଦେହି ।।
ମୁଁ ଯେ ସଂସାରେ ଅଛି ଛନ୍ଦି । ଭକତ ପାଶେ ମୋତେ ବାନ୍ଧି ।।
ଦୁର୍ଜୟ ଦେହ ମୋର ଶୂନ୍ୟ । ଭକତ ଭାବେ ମୁଁ ବନ୍ଧନ ।।
ଭକତ ଜନଙ୍କର ପାଶେ । ନିତ୍ୟେ ମୁଁ ଥାଇ ଭାବ ବଶେ ।।
(ପଞ୍ଚଦଶ ଅଧ୍ୟାୟ)

ଦରିଦ୍ର ପ୍ରାଣୀ ଯେବେ ମୋତେ । ଭକ୍ତେ ପୂଜିବ ଭାବ ଚିତ୍ତେ ।।
ତାହାର ଫଳ ପୁଷ୍ପ ମୁହିଁ । ଅଣୁ ପ୍ରମାଣେ ଯେବେ ପାଇ ।।
ସନ୍ତୋଷେ କରଇ ଆହାର । ହେଣୁ ଭକତେ ବନ୍ଧୁ ମୋର ।।
ସେ ଯେବେ ଅଣୁ ମାତ୍ର ଦେଇ । ମୁଁ ତାହା ବହୁତ ଘେନଇ ।।
ଯେ ମେରୁ ତୁଲ୍ୟ ନାନା ଦ୍ରବ୍ୟ । ମୋତେ ସମର୍ପଇ ଅଭାବେ ।।
ଶ୍ରଦ୍ଧା ନଥାଇ ଅନ୍ତର୍ଗତେ । ମୁଁ ତାହା ଛୁଇଁବି କେମନ୍ତେ ।।
ଇତ୍ୟାଦି
(ଅଷ୍ଟବିଂଶ ଅଧ୍ୟାୟ)

Digitized by srujanika@gmail.com

ଶ୍ରୀମଦ୍ଭଗବଦ୍ ଗୀତାରେ ମଧ୍ୟ ସେହିପରି, ଯଥା—

"ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରୟଚ୍ଛତି,
ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରୟତାତ୍ମନ ।"

(ନବମ ଅଧ୍ୟାୟ— ଶ୍ଳୋ । ୨୬ କ)

ଅର୍ଥାତ୍ ଯେ ଭକ୍ତର ସହିତ ପତ୍ର, ଫୁଲ, ଫଳ ବା ଜଳ ମୋତେ ଅର୍ପଣ କରେ ମୁଁ ସାଦରେ ତାହା ଗ୍ରହଣ କରେ ।

ଏଥିରୁ ପ୍ରମାଣିତ ହୁଏ ଯେ, ଭଗବାନ କୌଣସି ଭୋଗ ନୈବେଦ୍ୟ, ସ୍ତୁତିବାକ୍ୟ ବା ତୋଷାମଦରେ ସନ୍ତୁଷ୍ଟ ବା ବଶ ହୁଅନ୍ତି ନାହିଁ । ସେ କେବଳ ଭକ୍ତର ଭକ୍ତି ଭାବରେ ବଶ ହୋଇ ତାହାର ଭାବ ରଜ୍ଜୁରେ ବନ୍ଧା ହୋଇ ତାହା ପାଶରେ ରହିଥାନ୍ତି । ସେ ସ୍ୱଭବର ଦେବତା ନୁହନ୍ତି, ସେ ହେଉଛନ୍ତି ଭାବର ଦେବତା । କଥାରେ ଅଛି, "ଭାବକୁ ନିକଟ ହରି, ଅଭାବକୁ ଦୂର ।" ଯାହାର ମନ ଯେଉଁ, ତାହାର ପ୍ରଭୁ ସେତେ । ପୁଣି ଶାସ୍ତ୍ର ମଧ୍ୟ କହେ "ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ ।" ଅର୍ଥାତ୍ ମନ ଗୁଣେ ଫଳ ମିଳେ ।

ଶ୍ରୀମଦ୍ଭାଗବତରେ ମଧ୍ୟ ଭଗବାନ୍ କହିଛନ୍ତି :—

"ଯେ ପୁଣ୍ୟ ଆପଣେ କରିବ । କେବେ ହେ ପରେ ନ କହିବ ।
ଯେ ଦ୍ରବ୍ୟ ମୋତେ ସମର୍ପିବ । ପୁଣି ଗ୍ରହଣ ନ କରିବ ।"

କିନ୍ତୁ ଆଜକାଲି ଏହାର ଦୃଷ୍ଟାନ୍ତ କାହିଁ ? ଯାହା ଆମେ ଦାନ ପୁଣ୍ୟ କରୁ ତାହା କେବଳ ପ୍ରତିଦାନର ବା ସ୍ୱାର୍ଥସିଦ୍ଧିର ଆଶା ରଖି ଏବଂ ନାନା ପ୍ରକାର ପ୍ରଚାର ମାଧ୍ୟମରେ ଏହାର ବହୁଳ ପ୍ରଚାର ପାଇଁ । ଯାହା ସବୁ ଭୋଗ, ନୈବେଦ୍ୟ ଆଦି ଆମେ ଦେବାଦେବୀଙ୍କୁ ସମର୍ପଣ କରୁ ତାହା କେବଳ ନିଜର ଜିହ୍ୱା ଲାଳସା ମେଣ୍ଟାଇବା ପାଇଁ ଓ ଉଦର ଭରଣ ପାଇଁ । ଏଥିରେ ଟିକେ ମାତ୍ର ଭକ୍ତି ନ ଥାଏ କି ଶ୍ରଦ୍ଧା ନ ଥାଏ । ଏହା କେବଳ ପ୍ରବଞ୍ଚନା ଓ

Digitized by srujanika@gmail.com

ଆତ୍ମପ୍ରୀତି । ଚିନ୍ତା କରନ୍ତୁ ତ, ଯଦି ଦେବଦେବୀ, ସମର୍ପିତ ଭୋଗକୁ ଭକ୍ଷଣ କରୁଥାନ୍ତେ ବା ସମସ୍ତ ଦାନ ଦ୍ରବ୍ୟକୁ ଆତ୍ମସାତ୍ କରୁଥାନ୍ତେ ତେବେ କେତେ ଜଣ ବ୍ୟକ୍ତି ଏ ବିଗରେ ଆଗ୍ରହୀ ଓ ଆଗଭର ହୋଇଥାନ୍ତେ ?

୪ । **ଧ୍ୟାନ**—ଦେବ-ଦେବୀ ବା ପ୍ରତିମା ପୂଜା ଆମ ଧର୍ମର ମଧ୍ୟ ଏକ ଅଙ୍ଗ ଓ ସାଧନାର ଅନ୍ୟ ଏକ ବିଭାଗ । ଆମେ ଯେଉଁସବୁ ଦେବ-ଦେବୀ, ପ୍ରତିମା ବା ପିତୁଳାଦି ପୂଜା କରୁ ସେସବୁ ଅଟନ୍ତି ସେହି ନିରାକାର ଈଶ୍ୱରଙ୍କର ସାକାର ରୂପ ସଦୃଶ, ଯେପରିକି ଜଳର ଅନ୍ୟ ରୂପ ହେଉଛି ତୁଷାର । ମନ ଚଞ୍ଚଳ । ନୟନ ହେଉଛି ତାହାର ଗବାକ୍ଷ ବା ପଥପ୍ରଦର୍ଶକ । ମନକୁ ସ୍ଥିର ରଖିବାକୁ ହେଲେ ନୟନକୁ କୌଣସି ଏକ ନିର୍ଦ୍ଦିଷ୍ଟ ବସ୍ତୁ, ବିନ୍ଦୁ, ରୂପ ବା ମୂର୍ତ୍ତି ଉପରେ ନିବଦ୍ଧ କରି ଈଶ୍ୱରଙ୍କର ପୂଜା ବା ଧ୍ୟାନ କରିବା ଉଚିତ । ଦୁଇ ଭ୍ରୂଲତାର ମଧ୍ୟଭାଗକୁ ତ୍ରିକୁଟି ବା ସାଧନାର କେନ୍ଦ୍ରବିନ୍ଦୁ ବୋଲି ଧରାଯାଏ । ସେହି ତ୍ରିକୁଟି ଉପରେ ମନ ଓ ନୟନକୁ ନିବଦ୍ଧ ରଖି ନୟନ ମୁଦ୍ରିତ କରି, ଏକ ନିଭୃତ ସ୍ଥାନରେ ଏକାକୀ ପଦ୍ମାସନରେ ବସି, କରଯୋଡ଼ି ଧ୍ୟାନ କରିବା ବିଧେୟ । ନାସାଗ୍ରରେ ମଧ୍ୟ ଲକ୍ଷ୍ୟ ରଖି ଧ୍ୟାନ କରାଯାଇପାରେ । ଦେବ ଦେବୀ ବା ପିତୁଳାଦି ପୂଜା ପ୍ରକୃତି ହେଉଛି ଈଶ୍ୱରଙ୍କର ସାନ୍ନିଧ୍ୟ ଲାଭ କରିବା ପାଇଁ ଏକ ମାଧ୍ୟମ ବା ପାବଚ୍ଛ ସଦୃଶ । ଯେପରିକି—

"ଆକାଶାତ୍ ପତିତଂ ତୋୟଂ ଯଥା ଗଚ୍ଛତି ସାଗରଂ
ସର୍ବଦେବ ନମସ୍କାରଃ କେଶବଂ ପ୍ରତିଗଚ୍ଛତି ।।"

ଅର୍ଥାତ୍ ଆକାଶରୁ ପଡୁଥିବା ବର୍ଷାଜଳ ଯେପରି ଶେଷରେ ସମୁଦ୍ରକୁ ଯାଏ ସେହିପରି ଦେବ-ଦେବୀ ବା ପିତୁଳାଦି ପୂଜା ବା ପ୍ରଣାମ କଲେ ତାହା ଈଶ୍ୱରଙ୍କ ପ୍ରତି ଯାଏ ବା ଈଶ୍ୱର ତାହା ପାଆନ୍ତି ।

୫ । **ଅଭ୍ୟାସ**—ବହୁ ଶାସ୍ତ୍ର, ପୁରାଣ ଆଦି ଅଧ୍ୟୟନ ବା ମୁଖସ୍ଥ କରିବା ଦ୍ୱାରା ଯେଉଁ ଜ୍ଞାନ ଲାଭ ହୁଏ ତାହା ପ୍ରକୃତ ଜ୍ଞାନ ବା ଦିବ୍ୟଜ୍ଞାନ ନୁହେଁ । ଦିବ୍ୟଜ୍ଞାନର ଅନ୍ୟ ନାମ ହେଉଛି ଧର୍ମଜ୍ଞାନ ବା ଈଶ୍ୱର ବିଶ୍ୱାସ ।

Digitized by srujanika@gmail.com

ସେହି ବିବ୍ୟଜ୍ଞାନ ଲାଭ କରିବାକୁ ହେଲେ ଶାସ୍ତ୍ର ପୁରାଣର ମହତ ଉପଦେଶକୁ ଓ ଆଦର୍ଶକୁ କେବଳ ମୁଖରେ ଉଚ୍ଚାରଣ ନ କରି ନିଜ ଆଚରଣରେ ଓ ଅଭ୍ୟାସରେ ପ୍ରକଟିତ କରିବାକୁ ହେବ । ତାହା ଯେ ନ କରେ ସେ ପ୍ରକୃତ ପଣ୍ଡିତ ବା ଜ୍ଞାନୀ ନୁହେଁ । ଏହି ପ୍ରସଙ୍ଗରେ ଗୋଟିଏ ସୁନ୍ଦର ଦୃଷ୍ଟାନ୍ତ ବା ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

ଥରେ ଦ୍ରୋଣାଚାର୍ଯ୍ୟ ତାଙ୍କର ଶିଷ୍ୟମାନଙ୍କୁ କହିଲେ, "କାହା ପ୍ରତି କେବେ କ୍ରୋଧ କରିବ ନାହିଁ ।" ଏହି କଥାଟି ସମସ୍ତେ କାଲି ଶିଖି ଆସିଥିବ । ଗୋଟିଏ ପିଲାକୁ ଛାଡି ଅନ୍ୟ ସବୁ ପିଲା ଏହି କଥାଟି ମୁଖସ୍ଥ କରି ତହିଁ ଆର ଦିନ ଗୁରୁଙ୍କ ନିକଟରେ ପରୀକ୍ଷା ଦେଲେ । ତେଣୁ ଯେଉଁ ପିଲାଟି ଏହା ଶିଖି ନ ଆସିଥିଲା ଗୁରୁ ତା ଉପରେ ବିରକ୍ତ ହେଲେ । କିନ୍ତୁ ସେ ପିଲାଟି ଗୁରୁଙ୍କ କଥାରେ ମନ ଦୁଃଖ ନ କରି ଆଉ କିଛିଦିନ ପରେ ସେ ଉପଦେଶଟି ଶିଖି ଆସିବ ବୋଲି କହିଲା । ଏହିପରି ଅନେକ ଦିନ ବିତିଗଲା । ଗୁରୁ ତା ଉପରେ ଯେତେ ବିରକ୍ତ ହେଉଥାନ୍ତି ସେ ପିଲାଟି କିଛି ନ ଭାବି ଓ ନ କହି ହସ ହସ ମୁଖରେ ସବୁ ସହି ଯାଉଥାଏ । ଶିଖିବା ଲାଗି ଆଉ କିଛି ସମୟ ଦେବାପାଇଁ ଗୁରୁଙ୍କୁ ଅତି ବିନୀତ ଭାବରେ କହୁଥାଏ । ଏହିପରି କିଛିକାଳ ଗଲା ପରେ ସେ ପିଲାଟି ଦିନେ ଦ୍ରୋଣାଚାର୍ଯ୍ୟଙ୍କୁ କହିଲା ଯେ, ସେ କଥାଟି ସେ ଏତେଦିନ ପରେ ଶିଖି ଆସିଛି । ତେଣୁ ଗୁରୁ ତାହାକୁ ପରୀକ୍ଷା କଲେ । କାହିଁକି ଏ ସାମାନ୍ୟ କଥାଟି ଶିଖିବା ପାଇଁ ଏତେଦିନ ଲାଗିଲା ବୋଲି ତାହାର କାରଣ ସେ ପିଲାଟିକୁ ବିରକ୍ତ ହୋଇ ପଚାରିଲେ । ସେ ପିଲାଟି ପୂର୍ବପରି ହସ ହସ ମୁଖରେ ଉତ୍ତର ଦେଲା, "ଗୁରୁଜୀ ! ଆପଣ କେବଳ ଏ ଉପଦେଶଟିକୁ ମୁଖସ୍ଥ କରି ଆସିବାକୁ କହି ନ ଥିଲେ । ତାହାର ଅର୍ଥକୁ ଠିକ୍‌ଭାବେ ବୁଝି ନିଜର ଆଚରଣକୁ ସେହି ଅନୁସାରେ ଗଢିବା ପାଇଁ ଆପଣଙ୍କର ଏହି ମହତ୍ ଉପଦେଶର ଅସଲ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଥିଲା । ଏହା ଅତି କଷ୍ଟସାଧ କାର୍ଯ୍ୟ ହୋଇଥିବାରୁ, ଏହାକୁ ଶିଖିବା ଓ ଅଭ୍ୟାସ କରିବାପାଇଁ ମୋତେ ଏତେକାଳ ଲାଗିଗଲା । ସେଥିପାଇଁ ମୋତେ କ୍ଷମା ଦେବେ । ଏହି ବିଳମ୍ବ ପାଇଁ ଆପଣ ମୋ ଉପରେ ଯେତେ ବିରକ୍ତ ହେଉଥିଲେ ମଧ୍ୟ ମୁଁ କେବେହେଁ ସେଥିରେ ମନ ଦୁଃଖ ବା

Digitized by srujanika@gmail.com

କ୍ରୋଧ କରନାହିଁ ।' ଆପଣଙ୍କର ସେହି ଉପଦେଶକୁ ମାନି ମୁଁ ମୋର ମନରୁ କ୍ରୋଧ ଭାବକୁ ତ୍ୟାଗ କରିଛି । କାହାପ୍ରତି ଏଣିକି କ୍ରୋଧ କରୁନାହିଁ ।" ଦ୍ରୋଣାଚାର୍ଯ୍ୟ ଏହି ଶିଷ୍ୟଟିର ଆଚରଣରେ ଏହାର ପ୍ରକୃତ ପ୍ରମାଣ ପାଇ ଅତ୍ୟନ୍ତ ପ୍ରୀତ ହେଲେ ଏବଂ ତାଙ୍କ ଶିକ୍ଷାଦାନ ସାର୍ଥକ ହୋଇଛି ବୋଲି ଭାବିଲେ । ସେ ପିଲାଟି ତାଙ୍କର ସର୍ବଶ୍ରେଷ୍ଠ ଶିଷ୍ୟ ବୋଲି ଘୋଷଣା କଲେ ।"

ଏ ଶିଷ୍ୟଟି କିଏ ଜାଣ ? ସେ ହେଉଛନ୍ତି ଧର୍ମରାଜ ଯୁଧିଷ୍ଠିର ।

ତେଣୁ ଶାସ୍ତ୍ର, ପୁରାଣ ଆଦି କେବଳ ଅଧ୍ୟୟନ କି ମୁଖସ୍ଥ କଲେ କିଛି ଲାଭ ହୁଏ ନାହିଁ, ଯଦି ଆମେ ତାହାର ମହତ୍ ଉପଦେଶକୁ ନ ମାନୁ । ସେଥି-ପାଇଁ ଯେଉଁ ଶାସ୍ତ୍ର, ପୁରାଣ ଅଧ୍ୟୟନ ବା ଶ୍ରବଣ କରିବ ତାହାର ଉପଦେଶ ଅନୁସାରେ ଓ ଆଦର୍ଶକୁ ମାନି କର୍ତ୍ତବ୍ୟ କରିବା ବିଧେୟ । ସବୁ ଶାସ୍ତ୍ର, ପୁରାଣର ପ୍ରଧାନ ଲକ୍ଷ୍ୟ ବା ଉଦ୍ଦେଶ୍ୟ ପ୍ରାୟ ସମାନ । ତାହା ହେଉଛି ବିଷୟ ବାସନାମାନଙ୍କରୁ ଦୂରରେ ରହି ନିଜର ମନ ଓ ପ୍ରାଣକୁ ସଂପୂର୍ଣ୍ଣ ରୂପେ ଈଶ୍ବରଙ୍କ ନିକଟରେ ସମର୍ପଣ କରିବା । ତଥାକଥିତ ଜ୍ଞାନୀ ଓ ପଣ୍ଡିତ ବ୍ୟକ୍ତିର ମନ ଯଦି ସାଂସାରିକ ବିଷୟ ବାସନାକୁ ପରିତ୍ୟାଗ କରି ନ ପାରେ ସେ ମନ ବା ବ୍ୟକ୍ତି ହେଉଛି ଦୂର ଆକାଶରେ ଉଡି ବୁଲୁଥିବା ଶକୁନି ସଦୃଶ । କାରଣ, ଶକୁନି ବା ଶାଗୁଣା ଯେତେ ଉଚ୍ଚରେ ଉଡୁଥିଲେ ମଧ୍ୟ ତାହାର ଲୋଲୁପ ଦୃଷ୍ଟି ମୃତଜୀବର ଦୁର୍ଗନ୍ଧମୟ ପଚାସଡା ଶବ ଉପରେ ସଦା ସର୍ବଦା ନିବିଷ୍ଟ ଥାଏ ।

ଏ ଜୀବ ଜଗତରେ ମନୁଷ୍ୟ ହେଉଛି ସର୍ବଶ୍ରେଷ୍ଠ ଜୀବ ଓ ମନୁଷ୍ୟ ଜନ୍ମ ହେଉଛି ସର୍ବଶ୍ରେଷ୍ଠ ଜନ୍ମ । ଏ ପ୍ରସଙ୍ଗରେ ଶ୍ରୀମଦ୍ଭାଗବତ୍ ଏକାଦଶ ସ୍କନ୍ଧରୁ କେତେଗୋଟି ପଦ ଏଠାରେ ଉଲ୍ଲେଖଯୋଗ୍ୟ, ଯଥା—

ଆତ୍ମା କ୍ରୀଡନେ ନରହରି । ପୂର୍ବେ ଅନେକ ସୃଷ୍ଟି କରି ॥
ସଂସାରେ ଖେଳେ ନାନା ମତେ । ସନ୍ତୋଷ ନ ପାଇଲେ ଚିତ୍ତେ ॥

Digitized by srujanika@gmail.com

ଏଣୁ ମାନବ ସୃଷ୍ଟି କଲ । ଯହିଁ ବିଶ୍ରାମ ସର୍ବଜୀଳା ॥
ମନୁଷ୍ୟେ ଦେହେ ଦିବ୍ୟ ଜ୍ଞାନ । ଦେଖି ସନ୍ତୋଷ ଭଗବାନ ॥

(ଦଶମ ଅଧ୍ୟାୟ)

ଅନେକ ଜନ୍ମ ତପ ଫଳେ । ମନୁଷ୍ୟ ଜନ୍ମ ମହୀତଳେ ॥

(ସପ୍ତବିଂଶ ଅଧ୍ୟାୟ)

ଏ ସଂସାର ହେଉଛି ଈଶ୍ବରଙ୍କର ଖେଳଘର । ସେ ନିଜର ଚିତ୍ତ-ବିନୋଦନ ପାଇଁ ଯେତେ ଜୀବଜନ୍ତୁ, ସ୍ଥାବର ଜଙ୍ଗମ ଆଦି ଖେଳନା ସୃଷ୍ଟି କରିଛନ୍ତି ତାହା ମଧ୍ୟରେ ମନୁଷ୍ୟ ହେଉଛି ସର୍ବଶ୍ରେଷ୍ଠ, ସର୍ବଶେଷ ଓ ସର୍ବୋତ୍କୃଷ୍ଟ ଜୀବ । ଅନେକ ଜନ୍ମ ତପସ୍ୟା ଓ ସାଧନା ବଳରେ ମନୁଷ୍ୟ ଜନ୍ମ ଲାଭ ହୁଏ । ମନୁଷ୍ୟ ଓ ପଶୁ ମଧ୍ୟରେ କେବଳ ପାର୍ଥକ୍ୟ ହେଉଛି ଧର୍ମଜ୍ଞାନ । ଯେଉଁ ମନୁଷ୍ୟର ଧର୍ମଜ୍ଞାନ ନାହିଁ ସେ ପଶୁ ସଙ୍ଗେ ସମାନ । ଶାସ୍ତ୍ର କହେ "ଧର୍ମେଣ ହୀନାଃ ପଶୁଭିଃ ସମାନାଃ ।" ଯେ ଧରାକୁ ଧରି ରଖିଛି ତାହା ହେଉଛି ଧର୍ମ । ମନୁ ସଦାଚାର ନିୟମକୁ ଯେ ମାନି ଚଳେ ବା ଧର୍ମ ଆଚରଣ କରେ ସେ ହେଉଛି ମନୁଷ୍ୟ । ଧର୍ମବଳରେ ମନୁଷ୍ୟ ମୁକ୍ତିଲାଭ କରେ । 'ଧର୍ମ ରକ୍ଷତି ଧାର୍ମିକଃ' । କିନ୍ତୁ ଯେତେବେଳେ ଏହି ଧରାରୁ ଧର୍ମର ବିନାଶ ଘଟେ ଓ ପାପଭାର ବଢେ ସେତେବେଳେ ଭଗବାନ୍ ଧରାରେ ଅବତାର ରୂପରେ ଅବତୀର୍ଣ୍ଣ ହୋଇ ଧର୍ମକୁ ରକ୍ଷା କରନ୍ତି । ଦୁଷ୍ଟ ବା ପାପଗ୍ରସ୍ତ ଲୋକମାନଙ୍କୁ ବିନାଶ କରି ସାଧୁ ଓ ଧାର୍ମିକ ଲୋକମାନଙ୍କୁ ରକ୍ଷା କରନ୍ତି । ଏ ପ୍ରସଙ୍ଗରେ ଶ୍ରୀମଦ୍‌ଭଗବଦ୍ ଗୀତାରେ ଭଗବାନ କହିଛନ୍ତି—

"ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ।
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

(ଚତୁର୍ଥ ଅଧ୍ୟାୟ—ଶ୍ଳୋ : ୭-୮ କ)

Digitized by srujanika@gmail.com

ତେଣୁ ପ୍ରତ୍ୟେକ ବ୍ୟକ୍ତି ଗୀ ଗ୍ରକ୍ତି ଚରିତ୍ର କରି ଧର୍ମ ଆଚରଣ କଲେ ମୋକ୍ଷ ବା ମୁକ୍ତିଲାଭ ହୁଏ ।

ଶ୍ରୀମଦ୍ଭାଗବତ ତଥା ଶ୍ରୀମଦ୍ଭଗବଦ୍ ଗୀତାର ତତ୍ତ୍ୱ ଅନୁସାରେ ତ୍ରିଗୁଣାତ୍ମକ ମତରେ ମନୁଷ୍ୟକୁ ପ୍ରଧାନତଃ ତିନ ଶ୍ରେଣୀରେ ବିଭକ୍ତ କରଯାଇ- ଅଛି, ଯଥା—(୧) ସତ୍ତ୍ୱଗୁଣୀ, (୨) ରଜୋଗୁଣୀ ଓ (୩) ତମୋଗୁଣୀ । ଏହି ତ୍ରିଗୁଣ ବା ତିନଶ୍ରେଣୀ ବ୍ୟକ୍ତିଙ୍କର ଲକ୍ଷଣ ବା ଚିହ୍ନ ନିମ୍ନରେ ପ୍ରଦତ୍ତ ହେଲା—

(୧) ସତ୍ତ୍ୱଗୁଣ—ଶମ, ଦମ, ସତ୍ୟ, ଦୟା, କ୍ଷମା, ତ୍ୟାଗ, ଧର୍ମ, ବୈରାଗ୍ୟ, ଜ୍ଞାନ ଓ ଭକ୍ତି ପ୍ରଭୃତି ।

(୨) ରଜୋଗୁଣ—ମଦ, ମାତ୍ସର୍ଯ୍ୟ, କାମ, ଲୋଭ, ଗର୍ବ ଅହଂକାର, ବିଳାସ ଓ ବ୍ୟସନ ପ୍ରଭୃତି ।

(୩) ତମୋଗୁଣ—ହିଂସା, ଦ୍ୱେଷ, କ୍ରୋଧ, ମିଥ୍ୟା, ଦମ୍ଭ, ବିଳାସ, ଅଳସ, ଅଧର୍ମ ଓ ଅଜ୍ଞାନ ପ୍ରଭୃତି ।

ମୃତ୍ୟୁ ପରେ ଏହି ତିନ ଶ୍ରେଣୀସ୍ଥ ବ୍ୟକ୍ତିମାନଙ୍କର କ ପରିଣାମ ହୁଏ ଏ ପ୍ରସଙ୍ଗରେ ଶ୍ରୀମଦ୍ଭାଗବତର ଏକାଦଶ ସ୍କନ୍ଧରୁ କେତୋଟି ପଦ ଏଠାରେ ଉଲ୍ଲେଖଯୋଗ୍ୟ, ଯଥା—

(୧) ସାତ୍ତ୍ୱିକ ପ୍ରାଣୀ ଯେବେ ମରେ । ସ୍ୱର୍ଗ ସମ୍ପଦ ଭୋଗକରେ ॥
(୨) ଯେବେ ମରଇ ରଜୋଗୁଣୀ । ଏ ନରଲୋକେ ତା ଭ୍ରମଣି ॥
(୩) ଯେ ପ୍ରାଣୀ ତମୋଗୁଣେ ମରେ । ମହାନରକେ ସେ ସଞ୍ଚରେ ॥”

(ଷଡବିଂଶ ଅଧ୍ୟାୟ)

ଶ୍ରୀମଦ୍ଭଗବଦ୍ ଗୀତାରେ ମଧ୍ୟ ସେହିପରି, ଯଥା—

“ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା ମଧ୍ୟେ ତିଷ୍ଠନ୍ତି ରାଜସାଃ,
ଜଘନ୍ୟଗୁଣବୃତ୍ତିସ୍ଥା ଅଧୋ ଗଚ୍ଛନ୍ତି ତାମସାଃ ।”

(ଚତୁର୍ଦ୍ଦଶ ଅଧ୍ୟାୟ—ଶ୍ଳୋ । ୧୮ ଙ୍କ)

Digitized by srujanika@gmail.com

ଅର୍ଥାତ୍ ମୃତ୍ୟୁ ପରେ ସାତ୍ତ୍ୱିକ ବ୍ୟକ୍ତି ସ୍ୱର୍ଗରେ, ରାଜସିକ ବ୍ୟକ୍ତି ମର୍ତ୍ତ୍ୟରେ ଓ ତାମସିକ ବ୍ୟକ୍ତି ଜଘନ୍ୟ ନର୍କରେ ବାସ କରେ ।

ରଜୋଗୁଣୀ ଓ ତମୋଗୁଣୀ ବ୍ୟକ୍ତିମାନେ ମୃତ୍ୟୁ ପରେ ପଶୁ, ପକ୍ଷୀ ଓ କୀଟ ରୂପରେ ଜନ୍ମ ଗ୍ରହଣ କରନ୍ତି । କେବଳ ସାତ୍ତ୍ୱିକ ବ୍ୟକ୍ତି ମୋକ୍ଷଲାଭ କରେ । ତାହାର ପୁନର୍ଜନ୍ମ ହୁଏ ନାହିଁ ।

ଶ୍ରୀମଦ୍ଭାଗବତରେ ଭଗବାନ କହିଛନ୍ତି—

"ପୂର୍ବଜନ୍ମର କର୍ମଫଳେ । ଯାତ ମୁଁ ଦେଉଥାଇ ବଳେ ॥

ପୂର୍ବଜନ୍ମରେ ଯେପରି କାମ କରିଥିବ ଏ ଜନ୍ମରେ ସେହିପରି ଫଳ ଲାଭ କରିବ । ତେଣୁ ଏ ଜନ୍ମରେ ଯେପରି କାମ କରିବ ପରଜନ୍ମରେ ସେହି-ପରି ଫଳ ଲାଭ କରିବ । ଜନ୍ମ ପରେ ମୃତ୍ୟୁ ଅନିବାର୍ଯ୍ୟ ।

"ଜାତସ୍ୟ ହି ଧ୍ରୁବୋ ମୃତ୍ୟୁଃ ଧ୍ରୁବଂ ଜନ୍ମ ମୃତସ୍ୟ ଚ ॥"

(ଶ୍ରୀମଦ୍ଭଗବଦ୍ଗୀତା—୨ୟ ଅଧ୍ୟାୟ ଶ୍ଳୋ ୨୭ କ)

ଶ୍ରୀମଦ୍ଭାଗବତର ଏକାଦଶ ସ୍କନ୍ଧରେ ମଧ୍ୟ ସେହିପରି ଯଥା—

"ମର୍ତ୍ତ୍ୟ ମଣ୍ଡଳେ ଦେହ ବହି । ଦେବତା ହୋଇଲେ ମରଇ ॥"

(ନବମ ଅଧ୍ୟାୟ)

ତେଣୁ ମୃତ୍ୟୁ ପରେ ସ୍ୱର୍ଗସମ୍ପଦ ଲାଭ କରିବା ଲାଗି ବା ମୁକ୍ତିଲାଭ କରିବା ପାଇଁ ସାତ୍ତ୍ୱିକ ଗୁଣର ଅଧିକାରୀ ହେବାକୁ ସମସ୍ତଙ୍କର ଚେଷ୍ଟା କରିବା ବିଧେୟ । ଏ ଦିଗରେ ସାତ୍ତ୍ୱିକ ଖାଦ୍ୟପେୟ, ସଂଯମ ରକ୍ଷା ଓ ସତ୍ୟ କଥନ ମନୁଷ୍ୟକୁ ଅନେକ ସାହାଯ୍ୟ କରେ । ଏ ଜୀବନ ହେଉଛି କ୍ଷଣଭଙ୍ଗୁର ପାଣିଫୋଟକା ପରି । ତେଣୁ ବାଲ୍ୟକାଳରୁ ଧର୍ମ ଅର୍ଜନ ପାଇଁ ଅଭ୍ୟାସ କରିବା ଉଚିତ । ଶ୍ରୀ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ କହିଛନ୍ତି—

Digitized by srujanika@gmail.com

"ଯାବଜ୍ଜନନଂ ତାବନ୍ମରଣଂ, ତାବଜ୍ଜନନୀଜଠରେ ଶୟନମ୍,
ଇତି ସଂସାରେ ସ୍ଫୁଟତର ଦୋଷଃ, କଥମିହ ମାନବ ତବ ସନ୍ତୋଷଃ । ନଳିନୀ
ଦଳଗତ ଜଳବତ୍ ତରଳଂ, ତାବଜ୍ଜୀବନମତିଶୟ ଚପଳମ୍ ।
(ମୋହମୁଦ୍‌ଗର)

ଅର୍ଥାତ୍ ଜନ୍ମ ପରେ ମୃତ୍ୟୁ ଓ ମୃତ୍ୟୁ ପରେ ଜନ୍ମ ଏହିପରି ସଂସାରରେ ଲାଗି ରହିଅଛି । ଏ ଜୀବନ ହେଉଛି ପଦ୍ମପତ୍ରରେ ପଡ଼ିଥିବା ଜଳ ପରି ତଳ ତଳ ବା କ୍ଷଣସ୍ଥାୟୀ । ବଡ଼ ହେଲେ ବା ବୁଢ଼ା ହେଲେ ଧର୍ମ, ଉପାସନାଦି କରିବ ଏପରି ମନରେ ଭାବି ଅପେକ୍ଷା କରି ଓ ହେଳା କରି ରହିଯିବା ଅନୁଚିତ । ସ୍ୱର୍ଗୀୟ ଭକ୍ତକବି ମଧୁସୂଦନ ରାଓଙ୍କର ପିଲାମାନଙ୍କ ପ୍ରତି ଗୋଟିଏ ଉପଦେଶ ଏଠାରେ ସ୍ମରଣୀୟ, ଯଥା—

"ବାଲ୍ୟକାଳୁ ଧର୍ମ ଧନ ମୁଁ ସଞ୍ଚିବି
ଏ ଜୀବନ ଅନିଶ୍ଚିତ
କେ' ଜାଣେ କାହାର ଆଜ ମୃତ୍ୟୁକାଳ
ହୋଇଯିବ ଉପସ୍ଥିତ ।"

ମୋହମୁଦ୍‌ଗର ଉପଦେଶମାନଙ୍କ ମଧ୍ୟରୁ ଗୋଟିଏ ଶ୍ଳୋକ ଏହି ପ୍ରସଙ୍ଗରେ ଏଠାରେ ମଧ୍ୟ ଉଲ୍ଲେଖଯୋଗ୍ୟ, ଯଥା—

"ବାଲସ୍ତାବତ୍ କ୍ରୀଡାସକ୍ତସ୍ତରୁଣସ୍ତାବତ୍ତରୁଣୀରକ୍ତଃ
ବୃଦ୍ଧସ୍ତାବତ୍ ଚିନ୍ତାମଗ୍ନଃ ପରମେ ବ୍ରହ୍ମଣି କୋଽପି ନ ଲଗ୍ନଃ ।"

ଅର୍ଥାତ୍ ମନୁଷ୍ୟ ବାଲ୍ୟକାଳରେ ଖେଳରେ ମାତି, ଯୌବନ କାଳରେ ସ୍ତ୍ରୀ ପ୍ରତି ଅନୁରକ୍ତ ରହି ଓ ବୃଦ୍ଧ କାଳରେ ଚିନ୍ତାମଗ୍ନ ହୋଇ କାଳକ୍ଷେପଣ କରେ । କିନ୍ତୁ କୌଣସି କାଳରେ ବା ଅବସ୍ଥାରେ ଈଶ୍ୱରପ୍ରାପ୍ତି ପାଇଁ ଚେଷ୍ଟା କରେ ନାହିଁ । ଏହିପରି ଅବସ୍ଥାରେ ସେ ଇହ ସଂସାର ଛାଡ଼ି ଚାଲିଯାଏ । କେବଳ ଶେଷ ଜୀବନରେ ଅନୁତାପ ହିଁ ତାର ସାର । ତେଣୁ ବୟସ ନିର୍ବିଶେଷରେ କାଳବିଳମ୍ବ ନ କରି ବା ସମୟ ଓ ସୁଯୋଗକୁ ନ ଗୁହିଁ

Digitized by srujanika@gmail.com

ବାଲ୍ୟାବସ୍ଥାରୁ ଧର୍ମ, ଆଚରଣ, ଧ୍ୟାନ ଓ ଉପାସନା ଆଦି ଅଭ୍ୟାସ କଲେ ମୁକ୍ତି ବା ମୋକ୍ଷ ଲାଭ ହୁଏ ।

ସର୍ବଧର୍ମର ସାର୍ଥକତା କେବଳ ଈଶ୍ୱରପ୍ରାପ୍ତିରେ ହିଁ ନିହିତ । ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି । ଈଶ୍ୱର ସବୁ ଧର୍ମରେ ଏକ । ସାଧୁ, ସନ୍ଥ ଓ ସନ୍ନ୍ୟାସୀଗଣ ତାହାଙ୍କର ମହିମାକୁ ବହୁଭାବରେ ବ୍ୟକ୍ତ କରିଥାନ୍ତି । ପଥ ଭିନ୍ନ—ଲକ୍ଷ୍ୟ ଏକ, ମତ ଭିନ୍ନ—ସତ୍ୟ ଏକ ଓ ଧର୍ମ ଭିନ୍ନ— ଈଶ୍ୱର ଏକ, ଏହା ହେଉଛି ସର୍ବ ଧର୍ମର ସାର ମର୍ମ ।

୬ । **ସତ୍‌ସଙ୍ଗ**—ମନୁଷ୍ୟର ମନ ମଇକର କାଠ ସଦୃଶ । କୁ-ଅଭ୍ୟାସ ବା ମନ୍ଦ ସ୍ୱଭାବବଶତଃ ଏହା ଖରାପ ଦିଗକୁ ସହଜେ ଟାଣି ହୋଇଯାଏ । ଭଲ ଦିଗକୁ ଓ ଭଗବାନଙ୍କ ଆଡକୁ ଏହା ସହଜରେ ଯାଇପାରେ ନାହିଁ, ଯେପରିକି ଗୋବର ପୋକକୁ ଗୋବର ଗଦା ମଧ୍ୟରୁ ଆଣି ଗୋଲାପ ଫୁଲ ମଧ୍ୟରେ ରଖିଲେ ମଧ୍ୟ ତାକୁ ସେ ପରିବେଶ ଓ ସୁବାସ ଭଲ ଲାଗେ ନାହିଁ । ସେ ପୁନର୍ବାର ସେହି ଦୁର୍ଗନ୍ଧମୟ ଗୋବର ଗଦା ଭିତରକୁ ପଳାଇଯାଏ । ତେଣୁ ମନକୁ ମନ୍ଦମାର୍ଗରୁ ନିବର୍ତ୍ତାଇବା ପାଇଁ ନାମ, ସଙ୍ଗ ଓ ଗୁରୁ ଆଶ୍ରା ଆବଶ୍ୟକ । ସେଥିପାଇଁ ଭଗବାନ ଶ୍ରୀମଦ୍ଭାଗବତର ଏକାଦଶ ସ୍କନ୍ଧରେ କହିଛନ୍ତି, ଯଥା—

"ଏ ଜୀବ ସାଧୁ ସଙ୍ଗ ବିନୁ । ଲଭି ନ ପାରେ ମୋର ତନୁ ।।"

(ତ୍ରୟୋଦଶ ଅଧ୍ୟାୟ)

ଏ ଘୋର ସଂସାର ତରଙ୍ଗ । ନିସ୍ତାର ହେତୁ ସାଧୁସଙ୍ଗ ।।
ସନ୍ଥ ସଙ୍ଗମ ନାବେ ବସି । ନିସ୍ତରେ ଘୋର ଜଳ ରାଶି ।।
ଘୋର ରଜନୀ ଅନ୍ଧକାର । ଯେସନ୍ତେ ହରଇ ଦିବାକର ।।
ସାଧୁ ସଙ୍ଗମ ସେହି ମତେ । ନିସ୍ତାର ହେତୁ ଏ ଜଗତେ ।।

ଇତ୍ୟାଦି

(ସପ୍ତବିଂଶ ଅଧ୍ୟାୟ)

Digitized by srujanika@gmail.com

ମୋହ ମୁଦ୍‌ଗରରେ ମଧ୍ୟ ଶ୍ରୀ ଜଗଦଗୁରୁ ଶଙ୍କରାଚାର୍ଯ୍ୟ ସେହିପରି କହିଛନ୍ତି, ଯଥା—

କ୍ଷଣମିହ ସଜ୍ଜନ ସଙ୍ଗତି ରେକା, ଭବତି ଭବାର୍ଣ୍ଣବ ତରଣେ ନୌକା ।

ଅର୍ଥାତ୍ କ୍ଷଣମାତ୍ର ସାଧୁସଙ୍ଗ ଯେ ଲାଭ କରିପାରେ ତାହା ପକ୍ଷେ ଏହା ଏ ଭବସାଗରକୁ ପାରି ହେବା ପାଇଁ ନୌକା ସଦୃଶ ସାହାଯ୍ୟ କରେ ।

ପରଶ ପଥର ସ୍ପର୍ଶରେ ଲୁହା ଯେପରି ସୁନା ହୋଇଯାଏ, ଗଙ୍ଗାଜଳ ସଙ୍ଗେ ନର୍ଦ୍ଦମା ଜଳ ମିଶି ଯେପରି ପବିତ୍ର ହୋଇଯାଏ, ସେହିପରି ସାଧୁସଙ୍ଗ ଦ୍ୱାରା ମନୁଷ୍ୟ ହୃଦୟରୁ ପାପତାପ ଓ ସକଳ କଳୁଷ ଆଦି ଦୂର ହୋଇ ସେ ପବିତ୍ର ହୋଇଯାଏ ।

"ମୋକ୍ଷ ମୂଳ ଗୁରୁ କୃପା ।" ଗୁରୁଙ୍କ କୃପାବଳରେ ମନୁଷ୍ୟ ମଧ୍ୟ ମୋକ୍ଷ ଲାଭ କରେ । ଶ୍ରୀମଦ୍ଭାଗବତର ଏକାଦଶ ସ୍କନ୍ଧରେ ଉଲ୍ଲେଖ ଅଛି ଯେ—

"ସାକ୍ଷାତେ ଗୁରୁ ଯେ ଈଶ୍ୱର । ଗୁରୁଙ୍କୁ ନ ମଣିବ ପର ।।
ଗୁରୁଟି ସର୍ବ ଧର୍ମ ମୟେ । ମୂର୍ତ୍ତି ବସଇ ଗୁରୁ ଦେହେ ।।
ଏ ଯେଣୁ ଗୁରୁ ଭଗବାନ । ସେ ନୋହେ ମନୁଷ୍ୟ ସମାନ ।।
ମୋତେ ପୂଜିବ ଗୁରୁ ଦେହେ । ମୋତହୁଁ ଗୁରୁ ଭିନ୍ନ ନୋହେ ।।

(ଅଷ୍ଟାଦଶ ଅଧ୍ୟାୟ)

ବୈଷ୍ଣବ, ସାଧୁ ସନ୍ଥ ଓ ଗୁରୁ ଏମାନେ ସମସ୍ତେ ଏକଶ୍ରେଣୀ ଅନ୍ତର୍ଭୁକ୍ତ । ସେମାନଙ୍କର ଗୁଣ, ଚିହ୍ନ ଓ ଲକ୍ଷଣ ବିଷୟରେ ମଧ୍ୟ ସେହି ଶ୍ରୀମଦ୍ଭାଗବତରେ ନିମ୍ନଲିଖିତମତେ ସୂଚନା ଦିଆଯାଇଅଛି, ଯଥା—

Digitized by srujanika@gmail.com

"ସମଦରଶୀ ସର୍ବ୍ୟ ପାର । ଶୁଦ୍ଧ ବିବେକ ମତି ଯାର ।।
କ୍ରୋଧ ବର୍ଜିତ ଶାନ୍ତମତି । ତ୍ୟାଗ ସ୍ୱଭାବ ମହା ଧୀର ।।
କୃପାଳୁ ସର୍ବ ଲୋକହିତ । ଶୁଚି ଦୈବ ଦୃଢ ବ୍ରତ ।।
ଅଳ୍ପ ଭୋଜନେ ମନ ସ୍ଥିର । ମୃଦୁ ପ୍ରସନ୍ନ ସଜ୍ଜାଶୁର ।।
ସଂକଳ୍ପ ଅମାଣୀ ଆନନ୍ଦ । କବି ପଣ୍ଡିତ ବୁଦ୍ଧି ଶୁଦ୍ଧ ।।
ଚିତ୍ତ ସଂକଳ୍ପ ଅପ୍ରମାଣୀ । ଗଭୀର ଚିତ୍ତ ଧୀର ବୁଦ୍ଧି ।।
ଏ ବୈଷ୍ଣବର ଲକ୍ଷଣ । ସତ୍ୟାଦି ଏକ ବିଂଶ ଗୁଣ ।।

(ଦ୍ୱାଦଶ ଅଧ୍ୟାୟ)

ଉପର୍ଯ୍ୟୁକ୍ତ ଏକୋଇଶଟି ଲକ୍ଷଣ ଯେଉଁ ବ୍ୟକ୍ତିଙ୍କଠାରେ ପରିଲକ୍ଷିତ ହୁଏ, ସେ ହେଉଛନ୍ତି ପ୍ରକୃତ ବୈଷ୍ଣବ ବା ଗୁରୁ । ଆଜିକାଲି ନକଲି, ଶଠ ଓ ଛଦ୍ମବେଶୀ ବୈଷ୍ଣବ ଓ ଗୁରୁମାନଙ୍କର ଅଭାବ ନାହିଁ । କିନ୍ତୁ ଶ୍ରୀମଦ୍ଭାଗବତର ଲକ୍ଷଣ ଅନୁଯାୟୀ ପ୍ରକୃତ ବା ଅସଲ ବୈଷ୍ଣବ ବା ଗୁରୁ ସବୁଠାରେ ମିଳିବା ସମ୍ଭବ ଓ ସହଜ ନୁହେଁ । ଏ ପ୍ରସଙ୍ଗରେ ଗୁଣକ୍ୟ ଶ୍ଳୋକରେ ଉଲ୍ଲେଖ ଅଛି ଯେ—

"ଶୈଳେ ଶୈଳେ ନ ମାଣିକ୍ୟଂ ମୌକ୍ତିକଂ ନ ଗଜେ ଗଜେ,
ସାଧବୋ ନ ହି ସର୍ବତ୍ର ଚନ୍ଦନଂ ନ ବନେ ବନେ ।"

ଅର୍ଥାତ୍ ଯେପରି ସବୁ ପର୍ବତରେ ମାଣିକ୍ୟ ନଥାଏ, ସବୁ ହସ୍ତୀଙ୍କ ମଥାରେ ମୁକ୍ତା ନଥାଏ ଓ ସବୁ ବନରେ ଚନ୍ଦନ ବୃକ୍ଷ ନ ଥାଏ, ସେହିପରି ସବୁଠାରେ ସାଧୁଜନମାନେ ନ ଥାନ୍ତି ବା ମିଳନ୍ତି ନାହିଁ ।

ପ୍ରକୃତ ଶିଷ୍ୟ ହେବା ମଧ୍ୟ ସହଜସାଧ୍ୟ ବ୍ୟାପାର ନୁହେଁ । ଏହା ଅତି କଷ୍ଟସାଧ୍ୟ । ଗୁରୁ ହିସାବରେ ସେହି ଉପଦେଶକୁ ଅଭ୍ୟାସରେ ପରିଣତ କରିବାଲାଗି ଘୋର ନିଷ୍ଠା ଓ ସାଧନା ଆବଶ୍ୟକ । ତେଣୁ କଥାରେ ଅଛି "ଗୁରୁ ମିଳେ ଲାଖ୍ ଲାଖ୍, ଚେଲା ନ ମିଳେ ଏକ ।" ବାସ୍ତବିକ ଆଜିର ଦୁନିଆରେ ଭଲ କଥା କହିବାପାଇଁ ପାଟିର ଅଭାବ ନାହିଁ, କିନ୍ତୁ ଭଲ କାମ କରିବାପାଇଁ ହାତ ଓ ମନର ବହୁତ ଅଭାବ ଦେଖାଯାଏ । ତେଣୁ ପ୍ରକୃତ

Digitized by srujanika@gmail.com

ସାଧୁ ବା ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କରି ବା ସଦ୍‌ଜ୍ଞାନ ଲାଭ କରି ପ୍ରକୃତ ଶିଷ୍ୟ ବା ଚେଲା ହୋଇ ପାରିଲେ ଈଶ୍ୱରରୂପୀ ଗୁରୁଙ୍କର କୃପା ଲାଭ ହୁଏ ଓ ମୁକ୍ତି ମିଳେ ।

ଶ୍ରୀମଦ୍ଭାଗବତର ଅନ୍ୟ ଗୋଟିଏ ଶ୍ଳୋକ ହେଉଛି—

"ଓଁ ଅଖଣ୍ଡମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରମ୍,
ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।।"

ଅର୍ଥାତ୍ ଗୁରୁଙ୍କର କୃପାବଳରେ ବା ପୂଜା ବଳରେ ଈଶ୍ୱର ମିଳନ୍ତି । ଏଣୁ ମୋକ୍ଷ ବା ମୁକ୍ତି ଲାଭ କରିବା ପାଇଁ ସାଧୁସଙ୍ଗ ବା ଗୁରୁ ଆଶ୍ରା ଏକ ମାଧ୍ୟମ ବା ବାଟ ଅଟେ ।

୭ । **ସେବା ଓ ଦୟା**— ମୋକ୍ଷପ୍ରାପ୍ତିର ଅନ୍ୟ ଏକ ପନ୍ଥା ହେଉଛି ସେବା ବା ପରୋପକାର ଓ ଜୀବେ ଦୟା ।

'ପରୋପକାର ସ୍ୱର୍ଗାୟ' ଏହି ମହତ୍ ଉପଦେଶଟି ସମସ୍ତ ମୋକ୍ଷକାମୀମାନଙ୍କର ପାଳନ ଯୋଗ୍ୟ । ସମସ୍ତଙ୍କର ହୃଦୟରେ ଈଶ୍ୱର ବିଦ୍ୟମାନ । ତେଣୁ ପରର ସେବା ବା ଉପକାର କରିବା ଦ୍ୱାରା ଈଶ୍ୱରଙ୍କର ସେବା ହୋଇଥାଏ ଓ ସେ ସନ୍ତୁଷ୍ଟ ହୋଇଥାନ୍ତି । ଈଶ୍ୱର ହେଉଛନ୍ତି ବିଶ୍ୱପିତା । ଏ ବିଶ୍ୱ ବା ସୃଷ୍ଟିର ସମସ୍ତ ପ୍ରାଣୀ ତାଙ୍କର ପୁତ୍ର, କନ୍ୟା ସଦୃଶ । ପିତାମାତାଙ୍କ ଚକ୍ଷୁରେ ଯେପରି ସବୁ ପୁତ୍ର କନ୍ୟା ସମାନ, ଈଶ୍ୱରଙ୍କର ଚକ୍ଷୁରେ ମଧ୍ୟ ସେହିପରି । ରୋଗଗ୍ରସ୍ତ, ଦୁଃଖୀ ଓ ନିଃସହାୟ ସନ୍ତାନର ଦୁଃଖ ଦେଖି ପିତାମାତାଙ୍କର ମନ ଯେପରି ବ୍ୟାକୁଳ ହୁଏ ଓ ସେମାନେ ତାହା ପ୍ରତି ଅଧିକ ସ୍ନେହ, ଶ୍ରଦ୍ଧା ଓ ଯତ୍ନ ପ୍ରଦର୍ଶନ କରନ୍ତି, ଈଶ୍ୱର ମଧ୍ୟ ତଦ୍ରୂପ । ସେ ଏ ସଂସାରକୁ ଯେଉଁ ରୋଗଗ୍ରସ୍ତ, ବିପଦଗ୍ରସ୍ତ, ଦୁଃଖୀ ଓ ନିଃସହାୟ ବ୍ୟକ୍ତିମାନଙ୍କୁ ପଠାନ୍ତି ତାହା ସେମାନଙ୍କର ପାପ ବା କର୍ମ ଦୋଷ ପାଇଁ କେବଳ ନୁହେଁ, ବରଂ ସେମାନଙ୍କର ସେବା କରିବା ଦ୍ୱାରା ଓ ସେମାନଙ୍କ ପ୍ରତି ଦୟା କରିବା

Digitized by srujanika@gmail.com

ଦ୍ୱାରା ଜଗତର ଲୋକେ କପରି ଈଶ୍ୱରଙ୍କୁ ସନ୍ତୁଷ୍ଟ କରି ମୋକ୍ଷଲାଭ କରି ପାରିବେ ଏହା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । କୌଣସି ପ୍ରତ୍ୟାଶା ବା ସ୍ୱାର୍ଥସିଦ୍ଧିର ଉଦ୍ଦେଶ୍ୟ ବା ଆଶା ନରଖି ନିର୍ବିକାର ଓ ନିର୍ମଳ ଚିତ୍ତରେ ଯେଉଁ ପରୋପକାର ବା ସେବା କରାଯାଏ ତାହାହିଁ ପ୍ରକୃତ ସେବା । ସେଥିରେ ହିଁ କେବଳ ଈଶ୍ୱର ସନ୍ତୁଷ୍ଟ ହୁଅନ୍ତି । "ନର ନାରାୟଣ ଓ ବସୁଧୈବ କୁଟୁମ୍ବକମ୍" ଏହି ଧାରଣା ସମସ୍ତଙ୍କ ହୃଦୟରେ ଜାଗ୍ରତ ହେବା ଉଚିତ୍ । ଯେ ପ୍ରତିଦାନର ଆଶା ନ ରଖି ଦାନ କରେ ଓ ପ୍ରତ୍ୟାଶା ନ ରଖି ପରୋପକାର ବା ସେବା କରେ ସେ ଭଗବାନ ବା ଈଶ୍ୱର ।

ଶ୍ରୀମଦ୍ଭାଗବତ ଏକାଦଶ ସ୍କନ୍ଧରେ ଭଗବାନ କହିଛନ୍ତି—

"ସକଳ ଦେହେ ନାରାୟଣ । ବସନ୍ତି ଅନାଦି କାରଣ ॥"
(ତୃତୀୟ ଅଧ୍ୟାୟ)

"ମୁଁ ସର୍ବ ଆତ୍ମା ଅଧୀଶ୍ୱର । ମୋହର ନାହିଁ ପରାପର ।"
(ଷୋଡ଼ଶ ଅଧ୍ୟାୟ)

ଶ୍ରୀମଦ୍ଭଗବଦ୍ ଗୀତାରେ ମଧ୍ୟ ସେହିପରି, ଯଥା—

"ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେର୍ଜ୍ଜୁନ ତିଷ୍ଠତି ।"
(ଅଷ୍ଟାଦଶ ଅଧ୍ୟାୟ-୬୧)

ଈଶ୍ୱର ସକଳ ଘଟରେ ବିଦ୍ୟମାନ ଓ ତାଙ୍କଠାରେ ପରାପର ଭେଦାଭେଦ ନାହିଁ । ଏହି ବିଶ୍ୱାସ ହୃଦୟରେ ଦୃଢ଼ୀଭୂତ ହେଲେ ପରୋପକାର ବା ସେବା ପାଇଁ ମନରେ ଆଗ୍ରହ ସୃଷ୍ଟି ହୁଏ । ଏହି ପ୍ରକାର ସେବା ବଳରେ ଓ ଦୟାଦ୍ୱାରା ଈଶ୍ୱରଙ୍କର ସେବା ହୁଏ ଓ ମୁକ୍ତି ମିଳେ ।

୮ । **ନାମ ଭଜନ**—ଏ କଳିଯୁଗ ହେଉଛି ସବୁଠାରୁ ବଳି ପାପ ତାପ, ଦୁଃଖ, ମିଥ୍ୟା ଓ ଜଞ୍ଜାଳପୂର୍ଣ୍ଣ ଯୁଗ ।

ଶ୍ରୀମଦ୍ଭାଗବତରେ ଉଲ୍ଲେଖ ଅଛି—

"ସତ୍ୟ ସହିତ ତପ ଗଲା । ଶଉଚ ତ୍ରେତାରେ ରହିଲା ।
ଦ୍ୱାପର ଗଲା ଦୟା ସଙ୍ଗେ । ମିଥ୍ୟା ରହିଲା କଳିଯୁଗେ ॥

Digitized by srujanika@gmail.com

କିନ୍ତୁ ଏହା ସତ୍ତ୍ୱେ ଏ କଳିଯୁଗରେ ମୁକ୍ତିଲାଭ କରିବାପାଇଁ ସବୁଠାରୁ ସହଜ ପନ୍ଥା ହେଉଛି ଏକାନ୍ତ ନିଷ୍ଠା ଓ ଭକ୍ତିର ସହିତ ଈଶ୍ୱରଙ୍କର ନାମ କୀର୍ତ୍ତନ ବା ଭଜନ । ଶାସ୍ତ୍ର ପୁରାଣମାନଙ୍କରେ ଏ ପ୍ରସଙ୍ଗ ଉଲ୍ଲେଖ ଅଛି ଯେ—

"କୃତେ ଯଦ୍ଧ୍ୟାୟତେ ବିଷ୍ଣୁଂ ତ୍ରେତାୟାଂ ଯଜତୋ ମଖୈଃ
ଦ୍ୱାପରେ ପରିଚର୍ଯ୍ୟାୟାଂ କଳୌ ତଦ୍ଧରିକୀର୍ତ୍ତନାତ୍ ।"

ଅର୍ଥାତ୍ ସତ୍ୟଯୁଗରେ ବିଷ୍ଣୁଙ୍କୁ ଧ୍ୟାନ ଦ୍ୱାରା, ତ୍ରେତୟାଯୁଗରେ ଯଜ୍ଞ ଅନୁଷ୍ଠାନ ଦ୍ୱାରା ଓ ଦ୍ୱାପରଯୁଗରେ ପ୍ରଭୁଙ୍କର ସେବା ପୂଜା ଦ୍ୱାରା ଯେଉଁ ସବୁ ଫଳ ଲବ୍ଧହୁଏ କଳିଯୁଗରେ କେବଳ ମାତ୍ର ପ୍ରଭୁଙ୍କର ନାମ କୀର୍ତ୍ତନ ବା ଭଜନ ଦ୍ୱାରା ସେ ସମସ୍ତ ଫଳ ଲାଭ ହୋଇଥାଏ । ନାମ କୀର୍ତ୍ତନ ବା ଭଜନ ହେଉଛି ମନ ଓ ଆତ୍ମାର ପୁଷ୍ଟିକର ଖାଦ୍ୟ ଭଳି । ଏହା ମନକୁ ଓ ଆତ୍ମାକୁ ପ୍ରଚୁର ସୁଖ ଓ ଶାନ୍ତି ଦିଏ । ଶରୀରର ସବୁବିଧ ରୋଗର ଆରୋଗ୍ୟ ସାଧନ ଲାଗି ଏହା ମଧ୍ୟ ସର୍ବଶ୍ରେଷ୍ଠ ଔଷଧ ବା ମହୌଷଧି ରୂପେ କାର୍ଯ୍ୟ କରେ । କିନ୍ତୁ ଆଜକାଲିର ଏ କୀର୍ତ୍ତନ ବା ଭଜନ ହୋଇଗଲାଣି ଗୋଟାଏ ଗତ ଏବଂ ଆନୁଷ୍ଠାନିକ, ଢଳାଢପୂର୍ଣ୍ଣ ଓ ଭକ୍ତିହୀନ ବ୍ୟାପାର । ମୁଖ ଯାହା ଉଚ୍ଚାରଣ କରୁଛି ବା କହୁଛି, ହସ୍ତ ତାହା କାର୍ଯ୍ୟରେ କରୁ ନାହିଁ । ଏହା କେବଳ ମାତ୍ର ଲୋକ ଦେଖାଣିଆ, ନାନା ଆଡ଼ମ୍ବରତା ଓ କୁ-ଅଭ୍ୟାସ ପୂର୍ଣ୍ଣ ହୋଇ ପଡ଼ିଛି । ବକ୍ତା, ବକ୍ତବ୍ୟ ଓ ପରବର୍ତ୍ତୀ ଆଚରଣ ମଧ୍ୟରେ ପାରସ୍ପରିକ ସମନ୍ୱୟ ରହୁନାହିଁ । ଏ ପ୍ରକାର କୀର୍ତ୍ତନ, ଭଜନ ବା ପ୍ରବଚନ ଦ୍ୱାରା କୌଣସି ଲାଭ ହୁଏ ନାହିଁ । କୌଣସି ମିଠା ଦ୍ରବ୍ୟର ନାମ ମୁଖରେ କେବଳ ଉଚ୍ଚାରଣ କଲେ ପାଟି ମିଠା ହୁଏ ନାହିଁ, ତାହାକୁ ଖାଇଲେ ଯାଇଁ ପାଟି ମିଠା ହୁଏ । ସେହିପରି ପ୍ରଭୁଙ୍କର ନାମ କେବଳ ମୁଖରେ କୀର୍ତ୍ତନ ବା ଭଜନ କଲେ କିଛି ଲାଭ ହୁଏ ନାହିଁ । ପ୍ରଗାଢ଼ ନିଷ୍ଠା ଓ ଭକ୍ତିର ସହିତ ପ୍ରଭୁଙ୍କର ନାମ ଭଜନ ତାଙ୍କଠାରେ ସଂପୂର୍ଣ୍ଣ ଭାବେ ମନନିବେଶ କଲେ ତାଙ୍କର କୃପା ଲାଭ ହୁଏ ।

ଶ୍ରୀମଦ୍‌ଭଗବଦ୍ ଗୀତାରେ ଭଗବାନ କହିଛନ୍ତି—

"ମନ୍ମନାଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ,
ମାମେ ବୈଷ୍ୟସି ସତ୍ୟଂ ତେ, ପ୍ରତିଜାନେ ପ୍ରିୟୋଽସି ମେ ।"
(ଅଷ୍ଟାଦଶ ଅଧ୍ୟାୟ—ଶ୍ଳୋକ ୬୫)

Digitized by srujanika@gmail.com

ଅର୍ଥାତ୍ ଯେ ମନ ଓ ଧ୍ୟାନ ଦେଇ ଈଶ୍ୱରଙ୍କର ଆରାଧନା କରେ ସେ ତାଙ୍କୁ ଲାଭ କରେ ।

ଶ୍ରୀମଦ୍ଭାଗବତ ଏକାଦଶ ସ୍କନ୍ଧରେ ମଧ୍ୟ ସେହିପରି, ଯଥା—

ଲଭେ ନିମିଷେ କ୍ଷଣେ ଲେଶେ । ଯେ ଅବା ଥିବେ ଯେଉଁ ଦେଶେ ।।
କୃଷ୍ଣର ନାମ ଉଚ୍ଚେ ଗାଇ । ଲୋମ ପୁଲକ ତନୁ ବହି ।।
ନୟନୁ ବହି ଅଶ୍ରୁଜଳ । ଲଭନ୍ତି କୋଟି ତୀର୍ଥ ଫଳ ।।
ଏ ବଡ଼ ଲାଭ ଏ ଜଗତେ । କୃଷ୍ଣ ଭଜନ ନାମାମୃତେ ।।
ମୁଖେ ଉଚ୍ଚାରି ନିତ୍ୟ ନିତ୍ୟ । ଅଶେଷ ପାପୁଁ ତରଯାନ୍ତି ।।

\+ \+ \+

ବ୍ରାହ୍ମଣ ଆଦି ଚାରି ବର୍ଣ୍ଣେ । ତରିବେ ନାମ ସଙ୍କୀର୍ତ୍ତନେ ।।

ଇତ୍ୟାଦି ।

(ଷଷ୍ଠ ଅଧ୍ୟାୟ)

ନାମ କୀର୍ତ୍ତନ ବା ଭଜନ ବେଳେ ଈଶ୍ୱରଙ୍କଠାରେ ଲୟ ନ ରହି ଯଦି ଅନ୍ୟ ଚିନ୍ତାରେ ମନ ମଗ୍ନ ରହେ ତେବେ ସେ ପ୍ରକାର କୀର୍ତ୍ତନ ବା ଭଜନର କୌଣସି ସୁଫଳ ମିଳେ ନାହିଁ । ତାହା କେବଳ ଚିତ୍ତବିନୋଦନରେ ପରିଣତ ହୁଏ । ସେଥିରେ ଯେଉଁ ଫଳ ମିଳେ ତାହା ଅତି ନଗଣ୍ୟ କହିଲେ ଚଳେ, ଯାହାଦ୍ୱାରା ମୋକ୍ଷ ଲାଭ ହୋଇପାରେ ନାହିଁ । ଏ ପ୍ରସଙ୍ଗରେ ଆଉ କେତେ ଗୋଟି ପଦ ଏଠାରେ ଉଲ୍ଲେଖଯୋଗ୍ୟ, ଯଥା—

"ଯେତୁ ନାମ ସେତୁ କୃଷ୍ଣ ଭଜ ନିଷ୍ଠା କରି,
ନାମ ସହ ରହିଛନ୍ତି ଆପଣେ ଶ୍ରୀହରି ।
ଶତ ଭାର ସୁବର୍ଣ୍ଣ କୋଟିଏ କନ୍ୟା ଦାନ,
ତଥାପି ନ ହେବ କୃଷ୍ଣ ନାମର ସମାନ ।

Digitized by srujanika@gmail.com

କୃଷ୍ଣ ନାମ ଭଜ ଜୀବ ଆଉ ସବୁ ମିଛ,
ଯିବାକୁ ରେ ନାହିଁ ବାଟ ଯମ ଅଛି ପଛ ।
କୃଷ୍ଣ ନାମ ହରି ନାମ ଅତିବ ମଧୁର,
ଯେଉଁ ନର କୃଷ୍ଣ ଭଜେ ସେ ବଡ ଚତୁର ॥"

ଇତ୍ୟାଦି

ତେଣୁ ମୋକ୍ଷକାମୀ ଜନମାନେ ମନ, ଜ୍ଞାନ ଓ ଧ୍ୟାନ ଦେଇ ଏକାନ୍ତ ନିଷ୍ଠା, ପ୍ରଗାଢ ଭକ୍ତି, ଶ୍ରଦ୍ଧା ଓ ଅଟଳ ବିଶ୍ୱାସ ସହିତ ଈଶ୍ୱରଙ୍କର ନାମ କୀର୍ତ୍ତନ ବା ଭଜନ କରିବା ଓ ଶୁଣିବା ବିଧେୟ । "ନାମେ ଶ୍ରଦ୍ଧା" ଏହି କ୍ଷୁଦ୍ର କିନ୍ତୁ ଅତି ମଧୁର ଦେଢ ଦୁଇ ଗୋଟିକୁ ସମସ୍ତଙ୍କର ହୃଦୟ ମନେ ରଖିବା ଉଚିତ ଓ ଅଭ୍ୟାସ କରିବା ବିଧେୟ । ଯେହେତୁ ଏ ଯୁଗରେ ମୋକ୍ଷପ୍ରାପ୍ତି ପାଇଁ ତାହା ସର୍ବୋତ୍କୃଷ୍ଟ ଓ ସହଜ ପନ୍ଥା । ଏ ପ୍ରସଙ୍ଗରେ ଶାସ୍ତ୍ର, ପୁରାଣ, ପ୍ରଭୃତିରେ ବହୁ ପ୍ରମାଣ ଓ ବର୍ଣ୍ଣନା ରହିଛି, ଯାହାକି ପ୍ରାୟ ସମସ୍ତେ ଜାଣନ୍ତି । ତେଣୁ ସେ ସବୁର ପୁନରାବୃତ୍ତି ଏଠାରେ ନିଷ୍ପ୍ରୟୋଜନ । କଥାରେ ଅଛି, ଗୋଟିଏ ଥର ଭୁଲରେ ମଧ୍ୟ ଈଶ୍ୱରଙ୍କର ନାମ ମୁଖରେ ଉଚ୍ଚାରଣ କରି-ପାରିଲେ କୋଟିଏ ପୁଣ୍ୟର ଫଳ ମିଳେ ।

ମୋଟ ଉପରେ ବିଶ୍ୱାସ ହେଉଛି ବୀଜ, ବୈରାଗ୍ୟ ତାର ସାର; ସତ୍ସଙ୍ଗ ତାର ବର୍ଷା, ଭକ୍ତି ତାର ଅଙ୍କୁର, ଆତ୍ମସମର୍ପଣ ତାର ବୃକ୍ଷ ଓ ସମ୍ପୂର୍ଣ୍ଣ ମଗ୍ନତା ତାର ଫଳ । ଈଶ୍ୱରଙ୍କୁ ଲାଭ କରିବାକୁ ହେଲେ ଉପରୋକ୍ତ ଅଭ୍ୟାସ ଓ ସାଧନା ଅତ୍ୟନ୍ତ ନିଷ୍ଠାର ସହିତ କରିବା ଆବଶ୍ୟକ । ନିଷ୍ଠାର ସହିତ କର୍ତ୍ତବ୍ୟ ସମ୍ପାଦନ କଲେ ତହିଁରୁ ଯେଉଁ ମାନସିକ ଶାନ୍ତି, ସନ୍ତୋଷ ଓ ଆନନ୍ଦ ଉପଲବ୍ଧି ହୁଏ ତାହା ଅନ୍ୟ କେଉଁଥିରୁ ପ୍ରାପ୍ତି ହୁଏ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ୯ । ଉପସଂହାର—

ଉପସଂହାରରେ ଏତିକି ମାତ୍ର ସଂକ୍ଷେପରେ କହିଲେ ଯଥେଷ୍ଟ ହେବ ଯେ ଈଶ୍ୱରଙ୍କୁ ଲାଭ କରିବା ପାଇଁ ବା ଏ ସଂସାର ବନ୍ଧନରୁ ମୁକ୍ତିଲାଭ କରିବା ପାଇଁ ପ୍ରଗାଢ ଭଗବତ୍ ବିଶ୍ୱାସ ବା ଭକ୍ତି, ତୀବ୍ର ବୈରାଗ୍ୟ, ସତ୍ସଙ୍ଗ, ନିଷ୍କାମ

Digitized by srujanika@gmail.com

ସେବା ଓ ବିସ୍ତାର ସହିତ ଭଗବତ ନାମ କୀର୍ତ୍ତନ ଓ ଭଜନ ଆବଶ୍ୟକ ଅଟେ । ବିପଦରେ ବିଚଳିତ ନ ହୋଇ କିମ୍ବା ସମ୍ପଦରେ ବିଭୋଳ ନ ହୋଇ ଈଶ୍ୱରଙ୍କଠାରେ ସଦା ସର୍ବଦା ପ୍ରଗାଢ ବିଶ୍ୱାସ ଓ ଭକ୍ତି ରଖିଲେ ତାଙ୍କର ଅପାର କରୁଣା ଲାଭ ହୁଏ ।

ସେହି ପରମ ପିତା ପରମେଶ୍ୱର ଏବଂ ମଙ୍ଗଳମୟ ପ୍ରଭୁ ବିଶ୍ୱର ସମସ୍ତ ମଙ୍ଗଳ କରନ୍ତୁ ଏହି ମାତ୍ର ମୋର ବିନୀତ କାମନା ଓ ପ୍ରାର୍ଥନା ।

ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ ଦୁଃଖଭାଗ ଭବେତ ।

ଅକିଞ୍ଚନ
ଲେଖକ

Digitized by srujanika@gmail.com

# ଈଶ୍ୱର ଜଣାଣ

## ଈଶ୍ୱର ହେ ! ଥାଉ ତୁମ୍ଭ ପାଦେ ଲୟ

ଈଶ୍ୱର ହେ ! ଥାଉ ତୁମ୍ଭ ପାଦେ ଲୟ,
ଦିଅ ଯେତେ ଦୁଃଖ, ନ ହୋଇ ବିମୁଖ ଡାକିବ ମଙ୍ଗଳମୟ (ଘୋଷା)

ବୃଦ୍ଧ ପିତା ମାତା ନୟନୁ ଝରଇ ତପତ ଲୋତକ ଧାର,
ଯୁବା ତନୟକୁ ଅକାଳେ ନେଉଛ ନପୂରୁ ମାଣିକ ତାର,
ତାଙ୍କ କି ଆନନ୍ଦ ହେ ପରମାନନ୍ଦ ଅଟଇ ଏ କେଉଁ ନ୍ୟାୟ । ।୧।

ଜନନୀ କୋଳରୁ ବାଳୁତ କାଳରୁ ନୟନ ପିତୁଳା ନେଇ,
କି ଯଶ ଅରଜ ହେ ବରଜ ରାଜ ! ଦିଅ ଏ ଦୁଃଖ କର୍ମାଇ,
ତଥାପି ହେ ହରି ତୁମ୍ଭ ନାମ ଧରି କଳୁଷ ହୁଅଇ କ୍ଷୟ । ।୨।

ଯୁବତୀ ମଥାର ସୌଭାଗ୍ୟ ସିନ୍ଦୂର ପୋଛି ଦେଉଅଛ କେତେ,
ଏ କେଉଁ ବିଚାର ହେ କମଳା ବର ! ବୁଝାଇ କହିବ ମୋତେ,
ତଥାପି ଏ ମନ ଡାକେ ଭଗବାନ ଦୂର କର ଦୁଃଖ ଭୟ । ।୩।

ନ ଦେଉଛ କେତେ କଷଣ କାହାରେ ବଖାଣିବ କେତେ ବସି,
ଗୋଟିଏ ମୁହୂର୍ତ୍ତ କୋଟି କୋଟି ସେତ ନଅଣ୍ଟିବ ଦିବାନିଶି,
ତଥାପି କହିବ ଆହେ ଲୀଳାନିଧି ଅଟ ତୁମ୍ଭେ ଦୟାମୟ । ।୪।

ଏ ମାୟା ସଂସାର ତୁମ୍ଭ ଖେଳଘର ମାନବ ଖେଳନା ତୁର,
ତୁମ୍ଭର ବିଚାର କି ବୁଝିବ ନର ଦେବଙ୍କ ଯାହା ଅଗୋଚର,
ଏତିକି ଜଣାଣ ହୀନ ନାରାୟଣ ଶ୍ରୀପାଦେ ଦିଅ ଆଶ୍ରୟ । ।୫।

—o—

Digitized by srujanika@gmail.com

## ୨- ପ୍ରଭୁ ହେ ! ନଅନ ମୋତେ

ପ୍ରଭୁ ହେ ! ନଅନ ମୋତେ,
ପଡ଼ିଛି କଣ୍ଟା ଯେ ପଥେ,
ଅନ୍ଧକୁ ଦେଖାଅ ବାଟ ଡାକେ ମୁଁ ଅନ୍ତ ଆରତେ । (ଘୋଷା)

ମୋ ପାଦେ ଫୋଟିଲେ କଣ୍ଟା,
ହେବ ମୁଁ ଯେ ହଟହଟା,
ନାହିଁଟି ସାହା ଭରସା କେହି ମୋର ଏ ମରତେ । ।୧।

ମୁଁ ଯେବେ ପାଇବ ଦୁଃଖ,
ଡାକିବ ହେ ପ୍ରଭୁ ରଖ,
ନ ଫେଡ଼ିଲେ ମୋ ଆରତ ଦୋଷୀ ହେବଟି ଜଗତେ । ।୨।

ଖସଡ଼ା ଘସଡ଼ା ବାଟେ,
ନ ନଅ ହେ ମୋତେ ମୋଟେ,
ଗୋଡ଼ ଖସି ଝୁଞ୍ଜି ହେଲେ ଗୁଳିବ କି ଧରି ହାତେ ? ।୩।

ହରି ନାମ ଯଷ୍ଟି ଧରି,
ଗୁଳିବ ମୁଁ ପଥ ସ୍ମରି,
କରିବ ଏ ଭବୁ ପାରି ଲବେ ଦୟା ବନ୍ଧୁ ଶତ୍ରେ । ।୪।

ଅସତ୍ ଅଧର୍ମ ବାଟ,
ଅଟେଟି ସବୁଠୁଁ କଷ୍ଟ,
ଯେ ଜନ ସେ ବାଟେ ଯାଏ ବୁଡେ ସେ ବିପଦ ସ୍ରୋତେ ।୫।

ହୋଇଲେ ମୁଁ ପଥହରା,
ହେବ ତୁମେ ଧ୍ରୁବ ତାରା,
ସାରଥି ସଦୃଶ ହରି ବସ ମୋ ଜୀବନ ରଥେ । ।୬।

—o—

Digitized by srujanika@gmail.com

## ୩- ନାରାୟଣ ହେ ବାରେ ଗୁହାରି ଶୁଣ

ନାରାୟଣ ହେ । ବାରେ ଗୁହାରି ଶୁଣ,
ଦିଅ ନାହିଁ ମୋତେ ବେଶି ଧନ ପ୍ରଭୁ ଦିଅ ନାହିଁ ବେଶି ଜନ । (ଘୋଷା)

ବେଶି ଧନ, ଜନ ପାଇଲେ ଏ ମନ ତୁମ୍ଭ ଶ୍ରୀଚରଣେ ନ ଦିଏ ଧ୍ୟାନ,
ବିଷୟ ମୋହରେ ମଜି ଦିବା ନିଶି ହଜିଯାଏ ତାର ବିବେକ ପଣ । ।୧।

ଧନ, ଜନ ବଳେ ଗରବ ଯେ ବଢେ ହିତାହିତ ଜ୍ଞାନ ହୁଅଇ ଶୂନ୍ୟ,
ଧନ ପଛେ ମନ ଧାଏଁ ନିଶି ଦିନ ନ ଜାଣେ କେଉଁଟା ପାପ ବା ପୁଣ୍ୟ ।୨।

ଦୟା, ଧର୍ମ, କ୍ଷମା ନ ମାନେ ତା ସୀମା ପଶୁଠାରୁ ନର ହୁଅଇ ହୀନ,
ଧନ ଧନ ବୋଲି ସଦା ହୁଏ ଝୁରି ଯେତେ ଅରଜିଲେ ନ ମାନେ ମନ ।୩।

ରାଗ, ରୋଷ, ଦ୍ୱେଷ, କାମେ ଅନ୍ଧ ହୋଇ ଖୋଜେ ପରଦାର, ପିରତି, ଧନ,
ଧର୍ମ ପଥେ ମତି ନ ରହେ କଦାପି ବଢେ ଦିନୁଦିନ କୃପଣ ପଣ । ।୪।

ଧନ ବଳେ ଧନୀ ଗରିବ ରକତ ରାକ୍ଷସ ସମାନ କରେ ଶୋଷଣ,
ନ ଭାବେ ସେ ତିଳେ ଦିନେ କାଳବଳେ ସବୁ ଗର୍ବ ଦମ୍ଭ ହୋଇବ ଚୂର୍ଣ୍ଣ ।୫।

କୁଟୁମ୍ବ ବଢିଲେ ଜଞ୍ଜାଳ ବଢଇ ଜଞ୍ଜାଳରେ ଘାଣ୍ଟି ହୁଅଇ ଜନ,
ମାୟା, ମୋହ ଫାଶେ ବାନ୍ଧିହୋଇ ଶେଷେ ଗୀତା, ଭାଗବତେ ନଦିଏ କାନ ।୬।

ଧନରୁ ଉପୁଜି ହୁଏ ଲୋଭ ମୋହ ଲୋଭରୁ ଉପୁଜି ପାପ ଯେ ପୁଣ,
ପାପରେ ପଡିଣ ମରେ ମୂଢ଼ ଜନ ନର ଦେହ ହୁଏ ମାଟିରେ ଲୀନ । ।୭।

କୋଟି କୋଟି ପ୍ରାଣୀ ଦାନା କନା ବିନା ଖରତର ସହି କାନ୍ଦନ୍ତି ଦିନ,
ଧନୀ ଜନେ ପୁଣି ଦିଅ ବେଶୀ ଧନ ଗରିବ ଗୁହାରି କିମ୍ପା ନ ଶୁଣ ? ।୮।

ଜୀବନ ଧାରଣ ଲାଗି ଯେତେ ଧନ ସେତିକ ମାତର କର ହେ ଦାନ,
ତେବେ ସିନା ତୁମ୍ଭ ଶ୍ରୀ ଚରଣ ସେବି ମୋର ଏ ଜୀବନ ହୋଇବ ଧନ୍ୟ । ।୯।

—୦—

Digitized by srujanika@gmail.com

## ୪- ବିଶ୍ୱନିର୍ମାତା ହେ ! ମୋତେ ଦେଖାଅ ସେ ପୁର

ବିଶ୍ୱ ନିର୍ମାତା ହେ ! ଦେଖାଅ ମୋତେ ସେ ପୁର,
ନାହିଁ ଯହିଁ ଦ୍ୱନ୍ଦ, କପଟ, ଶଠତା, ହିଂସା, ଦ୍ୱେଷ, ଅହଙ୍କାର ।  (ଘୋଷା)

ଯହିଁ ଦେଖେ ତହିଁ ଲାଗିଛି କନ୍ଦଳ,
ସବୁ ଦୁଃଖ କଷ୍ଟ ସହେ ଛଳ ଦୁର୍ବଳ,
ଧର୍ମ ନାମେ ନିତ, କେତେ ଯେ ଅମିତ ନିର୍ଭୟରେ କରେ ନର ।  । ୧ ।

ପାଶବିକ ଶକ୍ତି ହୋଇଛି ପ୍ରବଳ,
ସମାଜରେ ବଡ଼ ଅଟେ ଯେ ସବଳ,
ଅଧର୍ମ ରାକ୍ଷସ, ଉପୂରେ ଏ ବିଶ୍ୱ, ହୁଏ ଆଜ ଥରହର ।  । ୨ ।

ହୁଏ ଯେବେ ସତ୍ୟ, ନ୍ୟାୟ, ଧର୍ମ କ୍ଷୟ
ତୁମ୍ଭ ଜ୍ୟୋତି ଭବେ ହୁଏଟି ଉଦୟ,
ଦୁଷ୍ଟ ବିନାଶନ, ସନ୍ଥ ପରିତ୍ରାଣ, ପାଇଁ ହୁଅ ଅବତାର ।  । ୩ ।

ପଢେ ଯେତେ ଶାସ୍ତ୍ର, ପୁରାଣ ଏ ଜନ,
ବୁଦ୍ଧି ସବୁ ହୁଏ ଅବୁଝା ସମାନ,
ବିବେକ ବିଚାର, କରି ପରିହାର, ଅସାରକୁ ମଣେ ସାର ।  । ୪ ।

ଅସାର ସଂସାର ସାଗରକୁ ପାରି,
ତୁମ୍ଭ ବିନୁ କେହି ନ ପାରଇ କରି,
ଫେଡ଼ ମୋର ଦୁଃଖ, ହେ ପଙ୍କଜ ମୁଖ, କର ହେ ମୋତେ ଉଦ୍ଧାର  । ୫ ।

—୦—

Digitized by srujanika@gmail.com

## ୫- ଯେତେ ଯାହା ପଢେ ଶୁଣେ ସବୁତ ପୁରୁଣା

ଯେତେ ଯାହା ପଢେ ଶୁଣେ ସବୁତ ପୁରୁଣା,
ସତ୍ୟକ ପୁରାଣ ଲେଖା ତୁମ୍ଭର କରୁଣା ? (ଘୋଷା)

ଏବେ କମ୍ପା ଅନୁକମ୍ପା ହୁଏ ତବ ଊଣା ?
ତୁମ୍ଭର କୀରତି ଗାଥା ନ ହୁଅଇ ଶୁଣା ? । ୧ ।

କୋଟି କୋଟି ପ୍ରାଣୀ ନ ପାଆନ୍ତି ଦାନା କଣା,
ଭୋଗନ୍ତି ଅଶେଷ କ୍ଲେଶ ଅଶେଷ ଯାତନା । । ୨ ।

ତୁମ୍ଭଙ୍କୁ ଅନ୍ତର କଥା ହୁଏ ଯେତେ ଜଣା,
ନ ଘୁଞ୍ଚେ କାହିଁକି ପ୍ରଭୁ ମାନବ ଯନ୍ତ୍ରଣା ? । ୩ ।

ଯୁଗେ ଯୁଗେ ଜନମିଛ ଧରି ଧର୍ମ ବାନା,
ରାମ, କୃଷ୍ଣ, ବୁଦ୍ଧ ଆଦି ତାହାର ନମୁନା । । ୪ ।

ଯାଇଛୁକି ଜାହା ଦୁଃଖ ତୁମ୍ଭ କୃପା ବିନା
ସତ୍ୟ ହେଉ କାଳେ କାଳେ ପୁରାଣ ବର୍ଣ୍ଣନା । । ୫ ।

ତୁମ୍ଭର କୃପାରେ ଚଳେ ଏ ଜଗତ ସିନା
ନ ହେଉ ହେ ପ୍ରଭୁ ସେହି କୃପା ଏବେ ଊଣା । । ୬ ।

—୦—

Digitized by srujanika@gmail.com

## ୭- ଅନ୍ତର୍ଯ୍ୟାମୀ ବୋଲି କହନ୍ତି ତୁମ୍ଭଙ୍କୁ

ଅନ୍ତର୍ଯ୍ୟାମୀ ବୋଲି କହନ୍ତି ତୁମ୍ଭଙ୍କୁ ସତେକି ଅନ୍ତର ଜାଣ ?
ଜାଣ ଯେବେ କିମ୍ପା ନଜାଣିଲା ପରି ରହି ସବୁ କଥା ଶୁଣ, ନିରଞ୍ଜନ ହେ ।
(ଘୋଷା)

ଶୁଣ ଯେବେ କିମ୍ପା ନ ଶୁଣିଲା ପରି ନଦିଅ ଉତ୍ତର କହ,
ନିତି ଡ଼ାକି ଡ଼ାକି ଗଲିଣି ମୁଁ ଥକି ପାଟିବୁଜି କିମ୍ପା ରହ । ୧ ।

ପାଟି ଥିଲା ପରି ପରତେ ନହୁଏ ଭୋଗ ଦେଲେତ ନଖାଅ,
ଖାଉଥିଲେ ତୁମ୍ଭେ ଚାଉଳ ଆଣନ୍ତିକି ଏତେ କିଶୋ ସୁର ଦିଅ । ୨ ।

ପାଟି ଥିଲେ ଥିବ ହାତ ତ ନଥିବ ଅଛି ବୋଲି କହ ଯେବେ,
ହାତ ଟେକି ତୁମ୍ଭେ ଦେଇଛକି ମୋତେ କରୁଣା କଣାଏ କେବେ ? । ୩ ।

ଆଖି ଥିଲା ଲୋକ ଦେଖି ପର ଦୁଃଖ ନ ପାରେଇଟି ଯାହା ସହି,
ତୁମ୍ଭେ ଦେଖି ସବୁ ନ ଦେଖିଲା ପରି ରହ କିମ୍ପା ଭବଗ୍ରାହୀ । ୪ ।

ଅଛି ଯେବେ ଆଖି, ସତ କହ ଦେଖି, ଦୁଃଖ କିମ୍ପା ଭୋଗେ ପ୍ରାଣୀ,
କୃପା ନୟନରେ ଅନାଇଲେ ବାରେ ଦୁଃଖ ହେଉଥାନ୍ତା ପାଣି । ୫ ।

ନାକ, କାନ, ଆଖି, ହାତ, ଗୋଡ଼; ପାଟି କହିଅଛ ଯେବେ ହରି,
ଦେଖା ଦିଅ ନାହିଁ କିମ୍ପା ଆହେ ସାଇଁ ରହ କେଉଁ ରୂପ ଧରି ? । ୬ ।

ତୁମ୍ଭେ ନିରାକାର ବ୍ୟାପ୍ତ ଚରାଚର ଭକତ ଅନ୍ତର ଜାଣ,
ଆହେ ଭବଗ୍ରାହୀ ବାରେ ଦୟା କରି ଗରିବ ଗୁହାରି ଶୁଣ, ନିରଞ୍ଜନ ହେ । ୭ ।

—୦—

Digitized by srujanika@gmail.com

## ୭- କେତେ କାଳ ପ୍ରଭୁ କଷିବ ହେ

କେତେ କାଳ ପ୍ରଭୁ କଷିବ ହେ ?
କଷଟି ପଥର ଗଲାଣିଟ ସରି କେଉଁଥିରେ ଆଉ ଘଷି ବସେ ହେ । (ଘୋଷା)

ଅଗ୍ନିରେ ଆଉଟି ନ ମାନେ ମନ,
ଚୂଣ୍ଠଆରେ ପିଟି କରିଲ ଚୂର୍ଣ୍ଣ,
ତେଜାପରେ ପୁଣି ପରଖି ନିରେଖି ଆଉ କେତେ ଯୁଗ ଦେଖିବ ହେ । ୧ ।

ରାଜହଂସ ପରି କ୍ଷୀରକୁ ଘୁଣି,
ପାଣିରୁ ପୃଥକ କରିଲ ପୁଣି,
ଆଉଟି ଆଉଟି ସରି ରହିଲାଟି ପାଣି ସଙ୍ଗେ ସେ କି ମିଶିବ ହେ । ୨ ।

ବାର ବାର କରି ଲଗଲେ ହଳ,
ଘାସ ଚୋଡ଼ ବାଛୁ କଲଣି ଠୂଳ,
ପଥର ହେଲଣି, ପାଉଁଶ ସଦୃଶ, ଆଉ କେତେ ବାର ଚଷିବ ହେ । ୩ ।

ଫୁଲରୁ କରାଇ ମଧୁ ବାହାର,
କରିଲ ତା ଶିରେ ବଜ୍ର ପ୍ରହାର,
ଝାଉଁଳ ଝାଉଁଳ, ପଡ଼ିଲାଣି ଝଡ଼ି, ଆଉ କି ସୁନ୍ଦର ଦିଶିବ ହେ । ୪ ।

ନ ମାନଇଁ ଯେବେ କାହିଁରେ ମନ,
ଦିଅ ଆଉ ଅଛି ଯେତେ କଷଣ,
ଥିବାଯାଏ ପ୍ରାଣ ଏହି ଅକିଞ୍ଚନ ତୁମ୍ଭ ନାମଗୋଟି ରଟିବ ହେ । ୫ ।

—o—

Digitized by srujanika@gmail.com

## ୮- ଜୀବ ରୂପେ ତୁମ୍ଭେ ଜଗତକୁ ଆସ

ଜୀବ ରୂପେ ତୁମ୍ଭେ, ଜଗତକୁ ଆସ, ସତେ କି ହେ ଭଗବାନ ?
ଜୀବନ ଭିତରେ, ଯେତେ ମୁଁ ଖୋଜିଲି, ନପାଇଲି ଦରଶନ । (ଘୋଷା)

ଯେଉଁ ଘଟ ତୁମ୍ଭେ, ଗଢ଼ିଅଛ ନିଜେ, ସେ ଘଟେ କରକି ବାସ ?
ଯେଉଁ ବୃକ୍ଷ ତୁମ୍ଭେ, ରୋପିଅଛ ନିଜେ, ତା ଡାଳେ କି ତୁମ୍ଭେ ବସ ?
ଜୀବନ ମରଣ, ହବୁଛ ସମାନ, ସବୁ ତୁମ୍ଭର ଭିଆଣ । ।୧।

ଆସ କାହିଁପାଇଁ, କି ଉଦ୍ଦେଶ୍ୟ ନେଇ, ପୂରଣ କି ହୁଏ ତାହା ?
ତୁମ୍ଭେ ହର୍ତ୍ତା କର୍ତ୍ତା, ବ୍ରହ୍ମାଣ୍ଡ ବିଧାତା, ସବୁ ଅଟେ ତୁମ୍ଭ ମାୟା,
ତୁମ୍ଭେ ଭୋଗ ଦୁଃଖ, ତୁମ୍ଭେ ଭୋଗ ସୁଖ, ରୂପ ବହୁ ଭିନ୍ନ ଭିନ୍ନ । ।୨।

ତୁମ୍ଭେ ହୁଅ ରାଜା, ତୁମ୍ଭେ ହୁଅ ପ୍ରଜା, ତୁମ୍ଭେ ହୁଅ ବନବାସୀ,
ତୁମ୍ଭେ ହୁଅ ଜଡ଼, ତୁମ୍ଭେ ହୁଅ ମୃତ, ତୁମ୍ଭେ ପୁଣି ହୁଅ ଋଷି,
କେତେ ରୂପେ ତୁମ୍ଭେ, ଏ ଜଗତେ ଖେଳ, କାହୁଁ ଜାଣିବ ଏ ଜନ । ।୩।

ତୁମ୍ଭେ ହୁଅ ଖଳ, ତୁମ୍ଭେ କଙ୍ଗାଳ ତୁମ୍ଭେତ ବିଶ୍ୱରପତି,
ତୁମ୍ଭେ ହୁଅ ଧରା, ତୁମ୍ଭେ ଭୋଗ କାରା, ବଡ ବିପଯାତ ଯନ୍ତି,
ହୋଇପାର ସାଧୁ, ଅସାଧୁ, ଲମ୍ପଟ, ସନ୍ଥ, ସନ୍ୟାସୀ ଆପଣ । ।୪।

ସୃଷ୍ଟି କରିଅଛ, ଆକାଶ ପାତାଳ, ସାଗର ପର୍ବତ ଧରା,
ବାୟୁ, ବହ୍ନି, ଜଳ, ସ୍ଥାବର, ଜଙ୍ଗମ, ଗ୍ରହ, ଉପଗ୍ରହ, ତାରା,
ଦାନବ, ମାନବ, ଗରଳ, ଅମୃତ, ସବୁ ତୁମରି ସୃଜନ । ।୫।

ଜୀବେ ଜୀବେ ହିଂସା, ଦ୍ୱେଷ ଲଗାଇଛ, ମୋହ ମାୟା ଜାଲେ ବାନ୍ଧି,
ମରୁ ମରୀଚିକା ପଛେ ଧାଇଁ ଧାଇଁ ଜୀବ ହେଉଥାଏ ଧନ୍ଦି,
ଦିଅ ସୁଖ ଦୁଃଖ, ସମ୍ପଦ ବିପଦ, ନଦିଅ କିମ୍ପା ଦର୍ଶନ ? ।୬।

—o—

Digitized by srujanika@gmail.com

## ୯- ଠେଲିଦେବ ଯେବେ ମଝି ଦରିଆକୁ

ଠେଲିଦେବ ଯେବେ ମଝି ଦରିଆକୁ କିଏ ମୋ ରଖିବ ଧରି
ଏ ଭବ ସାଗରୁ ତୁମ୍ଭ ବିନା ଆଉ କିଏ ସେ କରିବ ପାରହେ-ହରି-
ଜଗତ ଜୀବନ ଦାଇତ୍ୟାରି, ହେ ହରି
ଜୀବ ଯାଉ ତୁମ୍ଭ ନାମ ସ୍ମରି, ହେ ହରି । (ଘୋଷା)

ମାରିବାକୁ ତୁମ୍ଭେ, ବସିବ ଯାହାକୁ, କିଏ ସେ ପାରିବ ତାରି,
ବାମନ ରୂପରେ, ବଳି ରାଜନକୁ, ପେଶିଲ ପାତାଳ ପୁରୀ । । ୧ ।

ସ୍ତମ୍ଭରୁ ବାହାରି, ହିରଣ୍ୟ କଶିପୁ, ବକ୍ଷ ଥିଲଟି ବିଦାରି,
ଭକ୍ତ ପ୍ରହ୍ଲାଦର, ଫେଡିଲ ପ୍ରମାଦ, ନରସିଂହ ରୂପ ଧରି । । ୨ ।

ପର୍ଶୁରାମ ରୂପେ, ପର୍ଶୁ ଧରି ହସ୍ତେ, କ୍ଷତ୍ରିୟ ଥିଲ ସଂହାରି,
ରାମ ଅବତାରେ, ବନବାସ ଛଳେ, ରାବଣକୁ ଥିଲ ମାରି । । ୩ ।

ହଳଧର ରୂପେ ହଳ ଧରି ହସ୍ତେ ଦାନବ ଗଣଙ୍କୁ ମାରି,
ଧରଣୀ ରାଣୀର ହରିଥିଲ ଦୁଃଖ ଦେଲକି ମନୁ ପାଶୋରି । । ୪ ।

ବୁଦ୍ଧ ଅବତାରେ, ମାନବ ହୃଦରୁ ଦାନବ ସ୍ୱଭାବ ହରି,
ଦୟା, କ୍ଷମା, ପ୍ରେମ, ସତ୍ୟ, ଶାନ୍ତି, ମୈତ୍ରୀ ଜଗତେ ଥିଲ ବିତରି । । ୫ ।

ଯୁଗେ ଯୁଗେ ତୁମ୍ଭେ, ସନ୍ଥ ପାଳିଅଛ, ଦୁଷ୍ଟ ଦାନବ ସଂହାରି,
ଯେଣୁ ମୋ ଗୁହାରି ବାରେ ଦୟା କରି ପ୍ରଭୁ ଶଙ୍ଖ, ଚକ୍ର ଧାରୀ । । ୬ ।

—o—

Digitized by srujanika@gmail.com

# ୧୦- ଭୋଗରେ ସନ୍ତୁଷ୍ଟ ହୁଅନ୍ତ ହେ ପ୍ରଭୁ

ଭୋଗରେ ସନ୍ତୁଷ୍ଟ ହୁଅ କି ହେ ପ୍ରଭୁ, ଯୋଗରେ ସନ୍ତୁଷ୍ଟ ହୁଅ,
କୋପେ ଦିଅ ବର ମାଗିଲା ଜନେକି ? ତପେ ତୁମ୍ଭେ ତାହା ଦିଅ । (ଘୋଷା)

ଯାହାକୁ ଦେଇଛ, ଧନ ଦଉଲତ, ସେ ସିନା ବାଢ଼ିବ ଭୋଗ,
ଦୀନା ହୀନା ଜନା, ଯେ ସତେ ଦୁଃଖରେ, ହେବେକି ତାର ଏ ଭାଗ୍ୟ ?
ତୁମ୍ଭରି ଧନରେ, ତୁମ୍ଭକୁ ପୂଜିଲେ, ଆନନ୍ଦକି ତୁମ୍ଭେ ପାଅ ? । ୧ ।

ଯଦି ଏହା ସତ୍ୟ, ଦିଅ ମୋତେ ବିତ୍ତ, ଭୁଞ୍ଜାଇବି ନୈବେଦ୍ୟ,
ଭୁଞ୍ଜିବ ଆନନ୍ଦେ, ବିନା ପରମାଦେ, ପାଇବି ତୁମ୍ଭ ଦର୍ଶନ,
କାହିଁକି ବୃଥାରେ, ବନ ପର୍ବତରେ, ବୁଲାଇ କଷଣ ଦିଅ ? । ୨ ।

କୋପେ ଦିଅ ବର, ଯେବେ ହରିହର, ସେ ଅଛି ସହଜ ବାଟ,
ତପ ସାଧନାରେ, କାହିଁକି ବୃଥାରେ ପାଇବି ହେ ଦୁଃଖ କଷ୍ଟ,
ବିନା କଷ୍ଟେ କେଭେଁ, କୃଷ୍ଣ ନମିଳନ୍ତି, ଏହାକି ମିଥ୍ୟା ବତାଅ । । ୩ ।

ହେ କରୁଣା ସିନ୍ଧୁ, ଭକ୍ତ ଜନ ବନ୍ଧୁ ଯୁଗେ ଯୁଗେ ତୁମ୍ଭେ ଅଛ,
ବିପଦ ତାରଣ ପତିତ ପାବନ, ହରଣ କର ସଙ୍କଟ,
ପରଖି ନିରେଖି କେତେ ପରକାର ଶେଷରେ ପ୍ରସନ୍ନ ହୁଅ । । ୪ ।

ଯୋଗ, ଧ୍ୟାନ ବଳେ, ଯେଉଁ ଧନ ମିଳେ, ସେ ଅଟେ ପ୍ରକୃତ ଧନ,
ଆଉ ଯେତେ ଯାହା, ମନ ଭୁଲାଣିଆ ମରୁ ମରୀଚିକା ଜାଣ,
ଜାଣେ ନାହିଁ ମନ୍ତ୍ର ଜାଣେ ନାହିଁ ତନ୍ତ୍ର, ଚରଣେ ଶରଣ ଦିଅ । । ୫ ।

—o—

Digitized by srujanika@gmail.com

## ୧୧- ଜାଣି ଜାଣି ଯେବେ ଆଚରିବ ପାପ

ଜାଣି ଜାଣି ଯେବେ ଆଚରିବ ପାପ କ୍ଷମା କରିବକି କ୍ଷମାନିଧି ?
ଜାଣିଛି ମୁଁ କେବଳ ପାପୀ ତାପୀଙ୍କର କରିଅଛ ମନୋବାଞ୍ଛା ସିଦ୍ଧି । ୧ ।

ପାପକ ମୋଚନ କରକ ଆପଣ ପାପୀଙ୍କର ବସ୍ତୁ ଭୋଗ ନେଇ,
ଧନ ଦାନ କଲେ ଘୋର ପାତକରୁ ମାନବ ପାଏକି ମୋକ୍ଷ ହୋଇ ? । ୨ ।

ଅଧର୍ମ କରିଣ ସିନ୍ଧୁ ପରିମାଣ ଗୋଷ୍ପଦ ସମାନ କଲେ ଦାନ,
କରିକି ଉଦ୍ଧାର କରୁଣା ସାଗର ଭୁଲେକି ତହିଁରେ ତୁମ୍ଭ ମନ ? । ୩ ।

ଅଧରମ କରି ବଢାଇ କପଟ ଗଲବେଳେ ଯାଏ ମୂଳ ସହ,
ଦିଅ ନିଅ ପୁଣି ନିଅ ଦିଅ ଜମା କି ଲାଭ ତହିଁରୁ ପାଅ କହ ? । ୪ ।

ତୁମ୍ଭ ବଡ଼ପଣ ଏ ଅଧମ ଜନ ନବୁଝି ଧାଏଁଟି ଧନ ପଛେ,
ଲଗାଇଛ କେତେ ଲୀଳା ଏ ଜଗତେ ଆହା ଲୀଳାନିଧି ମିଛେ ମିଛେ । । ୫ ।

ନିଜକୁ ଚତୁର ମନେ କରି ନର କରେ କେତେ ପାପ ଚକ୍ଷୁ ବୁଜି,
ସେ ସବୁ ଶଠତା ହେ ଜଗତ କର୍ତ୍ତା ନପାରିବ ତୁମ୍ଭେ ତଳେ ବୁଝି ? । ୬ ।

ସେ ପାପୀ ତାପୀଙ୍କୁ କଲେ ପରିତ୍ରାଣ ସାର୍ଥକ ହୁଏକି ବଡ଼ପଣ ?
ଜଗତ କଲ୍ୟାଣ କର ଜନାର୍ଦ୍ଦନ ମୂଢ଼ ଜନେ ଦେଇ ସଦ୍‌ଜ୍ଞାନ । । ୭ ।

—୦—

Digitized by srujanika@gmail.com

## ୧୨- ବଡ ଦେଉଳରେ ରହିଲେକି ପ୍ରଭୁ

ବଡ ଦେଉଳରେ; ରହିଲେ କି ପ୍ରଭୁ, ସତେ ତୁମ୍ଭେ ବଡ ହୁଅ ?
ସାନ ଦେଉଳରେ, ପୂଜା ପାଇଲେକି, ପାଷାଣ ପାଲଟି ଯାଅ ?     (ଘୋଷା)

ସେ କି ତୁମ୍ଭ ବଡ଼ ପଣ ମାପକାଠି,
ବଡ ସାନ ଭେଦ କିବା ତୁମ୍ଭ ସୃଷ୍ଟି,
ହୀରା, ନୀଳା, ମୋତି, ମାଣିକ୍ୟ ବେଶକୁ ସତେ କି ହେ ଭଲପାଅ ?     । ୧ ।

ପାଅ ସର୍ବାଁ ଭୋଗ ନାନା ପରକାର,
ଅଟଇକି ସେହି ସ୍ଥାନ ତୁମ୍ଭ ପୁର,
ସତେକି ହେ ତୁମ୍ଭେ, ସେ ସବୁ ଦ୍ରବ୍ୟକୁ, କର ପ୍ରସାଦଣ ଖାଅ ?     । ୨ ।

ନାନା ଜାତି ପୂଜା ମେଳା ମହୋତ୍ସବ,
କରେ ତୁମ୍ଭ ଲାଗି କେତେ ଏ ମାନବ,
ସେ ସବୁ କି ତୁମ୍ଭ ଇଚ୍ଛା ଆହେ ପ୍ରଭୁ ତହିଁରେ କି ଖୁସି ହୁଅ ?     । ୩ ।

ମିଥ୍ୟା ପ୍ରବଞ୍ଚନା ବୃଥା ଆଡମ୍ବର,
ସବୁ ତୁମ୍ଭେ ବୁଝି ପାରତ ଠାକୁର,
ସବୁ ଜାଣି ଶୁଣି, କାହିଁକି ମାରଟେ, ରହ ଉତ୍ତର ନ ଦିଅ ।     । ୪ ।

ପୂଜିବ ତୁମ୍ଭଙ୍କୁ ମୋ ମନ ମନ୍ଦିରେ,
କରିବି ଅର୍ଚ୍ଚନା ଭକତି ଅର୍ଘ୍ୟରେ,
କାଳେ କାଳେ ତୁମ୍ଭେ, ଭକତ ବାନ୍ଧବ, ବାରେ ମୋ ଭକତି ନିଅ ।     । ୫ ।

—o—

Digitized by srujanika@gmail.com

## ୧୩. କିଏ କହେ ତୁମେ ନିରାକାର ବୋଲି

କିଏ କହେ ତୁମ୍ଭେ ନିରାକାର ବୋଲି,
ମୋ ମନ କରେ ତା ମନା,
ସବୁଠାରେ ତୁମ୍ଭେ ତୁମ୍ଭଠାରେ ସବୁ,
କିଛୁ ନାହିଁ ତୁମ୍ଭ ବିନା । ୧ ।
ନୁହଁ ନିରାକାର, ଅନେକ ଆକାର,
ଯୁଗେ ଯୁଗେ ତୁମ୍ଭେ ଧରି,
କେଉଁଠାରେ କେତେ, ରୂପେ ପୂଜା ପାଅ,
ଅଛଇ ତା ଅସୁମାରି । ୨ ।
କେଉଁଠାରେ ଦାରୁ ରୂପେ ପୂଜା ପାଅ,
କେଉଁଠି ଅବା ପାଷାଣ,
କେଉଁଠାରେ ସୁନା, ରୁପା, ହୀରା, ନୀଳା,
ପିଣ୍ଡ ହୁଅ ବିଦ୍ୟମାନ । । ୩ ।
କେତେ ପରକାରେ, କିଏ ପୂଜା କରେ,
କେତେ ଭୋଗରାଗ ଦେଇ,
ନିକଟ ଧାରଣ, ତୁଳ ତୁମ୍ଭେ ତାହା,
ଭକତି କଟାକ୍ଷ ଥୋଇ । । ୪ ।
ଭକତ ବତ୍ସଳ, ନାମ ବହିଅଛ,
ଭକତି ରସରେ ରସ,
ଭକତ ଜନର, ମନ ମନ୍ଦିରରେ,
ଅଛେ ସଦା ତୁମ୍ଭ ବାସ । । ୫ ।

—०—

Digitized by srujanika@gmail.com

## ୧୪- ଦୟାନିଧି ନାମେ ନ ଡାକି ତୁମଙ୍କୁ

ଦୟାନିଧି ନାମେ ନ ଡାକି ତୁମଙ୍କୁ ଡ଼ାକିବି ଏଣିକି ଦୁଃଖନିଧି,
ନ ଧରିବ ଦୋଷ ହେ କମଳା ଈଶ ନଗଲା ମୋ ଦୁଃଖ ଅଦ୍ୟାବଧି,
ତୁମେ ପରା ବିଧି ! ତେବେ କାହିଁ କର ପ୍ରଭୁ ଏ ଅବିଧି ? । ୧ ।
ଦୀନବନ୍ଧୁ ବୋଲି ନ କହି ତୁମଙ୍କୁ କହିବି ତୁମେ ଧନୀଙ୍କ ବନ୍ଧୁ,
ମୋର ଦୁଃଖଭାର ନଜାଣିଲ ଦୂରି ଦିନ ଗଲା ମୋର କାନ୍ଦୁ କାନ୍ଦୁ,
ଆହେ ଜଗବନ୍ଧୁ ! ଶୁଖି ଗଲାଣି ମୋ ନେତ୍ରୁ ନୀର ବିନ୍ଦୁ । । ୨ ।
ବିପଦ ଭଞ୍ଜନ ନ କହି କହିବି ତୁମଙ୍କୁ ବିପଦ ଦାତା ବୋଲି,
ସମ୍ପଦ ଆଶା ବା କରିବି କାହିଁକି ବିପଦ ଆସଇ ଯୋଡ଼ି ଖାଲି,
ଆହେ ବନମାଳୀ ! ଦିନ ନ ସରଇ ମୋର ଭଲି ଭଲି । । ୩ ।
ସଙ୍କଟ ତାରଣ ନ କହି କହିବି ସଙ୍କଟ କାରଣ ଅଟ ତୁମେ,
ଘୋର ସଙ୍କଟରେ ପଡ଼ି ମୁଁ ସହଇ କି ଭରସା ଆଉ ତୁମ ନାମେ ?
ପଡ଼ି ମହା ଭ୍ରମେ, ଭୋଗ ନୈବେଦ୍ୟ ବାଢଇ ବୃଥା ଶ୍ରମେ । । ୪ ।
ଅନାଥର ନାଥ ନ କହି କହିବି ତୁମେ କେବଳ କମଳା ପତି,
ମୁଁ ଅତି ଅନାଥ ଡାକି ଡାକି ମରେ ନ ଫେଡ଼ିଲ ବାରେ ମୋ ବିପତ୍ତି,
ଅଟେ ଏ କି ମତି ? ଆଉ କାହାକୁ କରିବି ମୁଁ ଆରତି । । ୫ ।
ଅଗତିର ଗତି ନ କହି ଏଣିକି କହିବି ତୁମେ ମହା ଦୁର୍ମତି,
ନ ଦେଖଇ ଗତି ନ ମିଳେ ମୁକତି ଯୋଡ଼ି ଆସେ ଖାଲି କାଳଗତି,
ଏ କେଉଁ ନୀରତି ? ତୁମେ ଅଟ ପରା ପ୍ରଭୁ ବିଶ୍ୱପତି । । ୬ ।
କରୁଣାକର ନାମ ବହିଛ ମିଛେ କଣାଏ କରୁଣା କଲ ନାହିଁ,
ଦେଖି ଦେଖି ତୁମେ ଦୁଃଖ ଦରିଆରେ ବୁଡ଼ି ଯାଉଅଛୁ ପ୍ରଭୁ ମୁହିଁ,
ନ କରିଲ ଚାହିଁ, ମିଛେ ବହିଅଛ ନାମ ଭବଗ୍ରାହୀ । । ୭ ।
ଜାଣିଅଛୁ ମୁହିଁ ଅଟ ଯୁଗେ ଯୁଗେ ପ୍ରଭୁ ତୁମେ ଭକତ ବତ୍ସଳ,
ଭକତର ବନ୍ଧୁ ଭକତି ଭାବରେ ସନ୍ତୁଷ୍ଟ ହୁଅ ତୁମେ କେବଳ,
ଦିଅ ଯେତେ ବଳ, ତୁମ ପାଦେ ଲୟ ଥାଉ କାଳ କାଳ । । ୮ ।

—୦—

Digitized by srujanika@gmail.com

## ୧୫- ତୁମେ ହେଲେ ପ୍ରଭୁ ଅନନ୍ତ ଆକାଶ

ତୁମେ ହେଲେ ପ୍ରଭୁ ଅନନ୍ତ ଆକାଶ ମୁଁ ସାମାନ୍ୟ ବିହଙ୍ଗମ,
ଉଡ଼ି ଉଡ଼ି ମୋର ଡେଣା ଥକିଲାଣି ମନ ହେଲାଣି ବିଭ୍ରମ । (ଘୋଷା)

ଦେଇଅଛ ଡେଣା ଉଡ଼ିବାକୁ ସିନା ଦେଇନାହଁ ମନେ ଶକ୍ତି,
ପକ୍ଷୀ ଜନମରୁ ଲଭିବା ପାଇଁକି ଏହି ସଂସାରରୁ ମୁକ୍ତି । ।୧।

ତୁମେ ହେଲେ ପ୍ରଭୁ ସାଗର ସଦୃଶ ମୁଁ ଅଟେ ସାମାନ୍ୟ ମୀନ,
ପହଁରି ପହଁରି ଥକି ଗଲିଣି ମୁଁ ହୋଇଲିଣି ଶକ୍ତିହୀନ । ।୨।

ନାହିଁ ମୋ ସାହାସ ନାହିଁ ମୋର ବାସ ନ ପାଏ ମୁଁ ଥଳକୂଳ,
ଯେଉଁ ଆଡ଼େ ବୁଲେଁ ଆଖି ପାଏ ନାହିଁ ଚଉଦିଗେ ଦେଖେ ଜଳ । ।୩।

ତୁମେ ହେଲେ ପ୍ରଭୁ ଅଲଙ୍ଘ୍ୟ ପର୍ବତ ମୁଁ ଅଟେ କ୍ଷୁଦ୍ର ବାମନ,
ତୁମ ପାଦ ତଳେ କେତେ ଆଶା ଧରି ହୋଇଛି ଦଣ୍ଡାୟମାନ । ।୪।

ତୁମ ପାଦ ରେଣୁ ଶିରେ ବହିବାକୁ ଦେଇନାହଁ ମୋତେ ବଳ,
ନ ମେଣ୍ଟିଲା ତୃଷ୍ଣା ନ ପୂରିଲା ଆଶା ବିତିଗଲା କାଳ କାଳ । ।୫।

ନ ହୋଇ ହତାଶ ରଖିଅଛି ଆଶ ତୁମ କୃପା ଲଭ ପାଇଁ,
ବିପଦ ଆପଦ ସୁଖ ଦୁଃଖେ ଲୟ ରଖିଛି ହେ ତୁମଠାଇଁ । ।୬।

ବିକଶିତ କର ମୋ ହୃଦ କୁସୁମ ବରଷି କରୁଣା ବାରି,
ତୁମ ଶ୍ରୀପଦ୍ମରେ ଏତିକି ଗୁହାରି ଆହେ ପ୍ରଭୁ ଦୁଃଖହାରୀ । ।୭।

—o—

Digitized by srujanika@gmail.com

## ୧୭- ଦେବତା ! କି ନାମେ ଡାକିବି ତୋତେ

ଦେବତା ! କି ନାମେ ଡାକିବି ତୋତେ ?
ଅଶେଷ ପ୍ରକାର ବିଶେଷଣ ତୋର ବତାଇଦେ ନାମ ମୋତେ । (ଘୋଷା)

ସବୁ ବିଶେଷଣ ତୋର ମହିମା, ନାହିଁ ଯାର ଶେଷ ନାହିଁ ଯା ସୀମା,
ତୁ ଯେ ନିରାକାର ତୁ ପୁଣି ସାକାର ଯେ ଯିବଲି ଯେଉଁମତେ । । ୧ ।

ଜଳରୁ ତୁଷାର ଜନମ ପରି, ଭିନ୍ନ ଭିନ୍ନ ରୂପ ତୁ ଥାଉ ଧରି,
ଭିନ୍ନ ସିନା ରୂପ ଗୁଣ ମାତ୍ର ଏକ କି ବିଚିତ୍ର ଲୀଳା ସତେ ! । ୨ ।

ପାଦ ବିନୁ କରୁ ତୁ ବିଚରଣ, ସ୍ୱର୍ଗ, ମର୍ତ୍ତ୍ୟ, ନାଗ ତିନ ଭୁବନ,
କାନ ବିନୁ ସବୁ ଶୁଣିପାରୁ ତୁହି ଯେ ଯାହା କହେଛି ଯେତେ । । ୩ ।

କର ବିନୁ ତୁ ଜଗତ କରତା, ବାକ୍ ଶକ୍ତି ନ ଥାଇ ବଡ ବକତା,
ଆନନ ନଥାଇ ପାରୁ ଚାଖି ତୁହି ସବୁ ସ୍ୱାଦ ଏ ଜଗତେ । । ୪ ।

ନୟନ ନ ଥାଇ ତୁ ପାରୁ ଦେଖି, ନାସା ବିନୁ ବାସ ପାରୁ ପରଖି,
ଶରୀର ନ ଥାଇ ସବୁ ପାରୁ ଛୁଇଁ ସବୁଠି ଥାଉ ନିରତେ । । ୫ ।

ପୂଜା ତୋତେ ଯେତୁ ନାନା ଉପଚାରେ, ନ ଯେନୁ ତୁ ତାହା ଭକ୍ତି ଅଭାବେ,
ରେଣୁ ମାତ୍ର ଦ୍ରବ୍ୟ ଲଭି ତୁ ସନ୍ତୋଷ ହେଉ ଦେଏ ଭକତ ଚିତ୍ତେ । । ୬ ।

—୦—

Digitized by srujanika@gmail.com

## ୧୭- ପୁଷ୍ପଟିଏ ବୃକ୍ଷେ ଦେଖିଲେ ହେ ପ୍ରଭୁ

ପୁଷ୍ପଟିଏ ବୃକ୍ଷେ ଦେଖିଲେ ହେ ପ୍ରଭୁ ତୁମ କଥା ପଡ଼େ ମନେ,
ପକ୍ଷୀଟିଏ ଯେବେ ଆକାଶେ ମୁଁ ଦେଖେ ତୁମ କୃପା ତାହା ମଣେ । ।୧।

ଜଳ ମଧ୍ୟେ ଯେବେ ଦେଖେ ମୀନଟିଏ ଭାବେ ତା ତୁମର ସୃଷ୍ଟି,
ଗଗନରୁ ବାରି ବରଷିଲେ ଭାବେ ତାହା ତୁମ କୃପା ଦୃଷ୍ଟି । ।୨।

ମରୁତ ବହିଲେ ଚକ୍ଷୁ ଅନ୍ତରାଳେ ଭାବେ ତାହା ତୁମ ଦୟା,
ଅଗ୍ନି ଯେବେ ଜଳେ ଆଲୋକ ପ୍ରକାଶି ଭାବେ ତାହା ତୁମ ମାୟା ।୩।

ନଦୀ, ସାଗରକୁ ଦେଖି ମୁଁ ଭାବଇ ଏହି ସବୁ ତୁମ କରୁଣା,
ବନ, ପର୍ବତକୁ ଦେଖି ମୁଁ ଭାବଇ ତୁମ କାରିଗରି ସିନା । ।୪।

ସ୍ଥାବର, ଜଙ୍ଗମ, କୀଟ, ସରୀସୃପ ଯେତେ ଦ୍ରବ୍ୟ ଯେତେ ଜୀବ,
କୋଟି କୋଟି ଗ୍ରହ ଆଉରି ନକ୍ଷତ୍ର ସବୁ ତୁମଠୁଁ ଉଦ୍ଭବ । ।୫।

ସର୍ବଶେଷ ସୃଷ୍ଟି ସର୍ବଶ୍ରେଷ୍ଠ ସୃଷ୍ଟି ମନୁଷ୍ୟ ଅଟେ ତୁମର,
ତାଠାରେ ଦେଖିଲେ ଦ୍ରବ୍ୟ ଧର୍ମଜ୍ଞାନ ସନ୍ତୋଷ ହୁଅ ଈଶ୍ୱର । ।୬।

ସବୁ ସହିପାର ଅଟେ ସୃଷ୍ଟିକର୍ତ୍ତା ଧର୍ମ ଗ୍ଲାନି ସହ ନାହିଁ,
ଦୁଷ୍ଟଙ୍କୁ ସଂହାର ସନ୍ଥଙ୍କୁ ଉଦ୍ଧାର ତୁମେ ଅବତାର ହୋଇ । ।୭।

ତୁମେ କର ସୃଷ୍ଟି କରଟି ପାଳନ କର ଯେ ପୁଣି ସଂହାର,
ତୁମ ବିନୁ କିଛି ନାହିଁ ଏହି ଭବେ ହେ ପ୍ରଭୁ କରୁଣାକର । ।୮।

—୦—

Digitized by srujanika@gmail.com

## ୧୮- ସଂସାରକୁ ଯେବେ ପଠାଇଲ ପ୍ରଭୁ

ସଂସାରକୁ ଯେବେ ପଠାଇଲ ପ୍ରଭୁ,
ଅସାର କଲ କମ୍ପା ମୋ ପ୍ରାଣ ?
ସୁଖ ଭୋଗ ଧନେ ନ କଲ ଜୀବନେ,
କାନ୍ଦ କାନ୍ଦ ଗଲ ମୋର ଦନ । (ଘୋଷା)

ସୁଖ ଭୋଗେ କଏ ଅଦରଇବ, କାନ୍ଦ କାନ୍ଦ ନ ଶୁଖେ ମୋ ଲୁହ,
କରବ କ ବୁଦ୍ଧି, ମୋତେ ପ୍ରଭୁ କୁହ
ନଷ୍ଠୁର ନ ହୁଅ ନାରାୟଣ । ୧ ।

ଲଦଦେଲ ଶିରେ ଦୁଃଖ ଭାର, ଗୃଳବାକୁ ନାହିଁ ଶକ୍ତି ମୋର,
ମନୁଷ୍ୟ ଜନମ ଦେଇ ମୋତେ ପ୍ରଭୁ,
ପଶୁଠାରୁ କଲ ଧାର ହୀନ । ୨ ।

ଏହା କ ମୋ ପୂର୍ବ କର୍ମଫଳ ? ବୁଝିବାକୁ ନାହିଁ ମୋର ବଳ,
ଏ ଜନମେ ତେଣୁ କ କର୍ମ କରବ
କରଦଅ ବେଗୁଁ ସାବଧାନ । ୩ ।

କର କରାଇଣ ଥାଅ ସବୁ, ଆହେ ସର୍ବ ଲୀଳାମୟ ପ୍ରଭୁ,
ସର୍ବ ଘଟେ ଥାଅ ସର୍ବ ଦେଖୁଥାଅ,
ସବୁର ଗୁହାରି ତୁମେ ଶୁଣ । ୪ ।

କପାଇଁ ହେଲ ନଦା ପଥର, ମୋ ପାଇଁ ପ୍ରଭୁ ଦୟାସାଗର,
କଇ ହେ କରୁଣା ନ ହୋଇ ବିମନା,
ଏତକ ବନତ ମୋର ଘେନା । ୫ ।

—୦—

Digitized by srujanika@gmail.com

## ୧୯- ପାପତାପ ହର ବୋଲି ନାମ ଯେବେ ହରି

ପାପ ତାପ ହର ବୋଲି ନାମ ଯେବେ ହରି,
ନ ଶୁଣ ତେବେ କାହିଁକି ପ୍ରଭୁ ମୋ ଗୁହାରି ? (ଘୋଷା)

ଆନନ୍ଦ ଦାଅ ବୋଲି କି ତୁମ୍ଭ ନାମ ରାମ ?
ଯେ ନାମ ଭଜିଲେ କାହିଁ ଭୟ କରେ ଯମ,
ନ କର କାହିଁକି ମୋତେ ସଂସାରରୁ ପାରି ? । ୧ ।

କ୍ଲେଶ ଦୂର କରି, କର ଆନନ୍ଦ ପ୍ରଦାନ,
ତେଣୁ କୃଷ୍ଣ ନାମ ବହିଛନ୍ତି ଭଗବାନ ?
ଦେଉଛ କାହିଁକି ତେବେ ମୋ ଡାକକୁ ଡରି ? । ୨ ।

ଅନ୍ତରର କଥା ତୁମ୍ଭେ ଯେଣୁ ଜାଣିପାର,
ଅନ୍ତର୍ଯ୍ୟାମୀ ନାମ ତେଣୁ ହୋଇଛି ତୁମ୍ଭର,
ମୋ ଅନ୍ତର ବ୍ୟଥା ବୁଝି ନ ପାର କପଟି ? । ୩ ।

ଦୀନ ହୀନ ଡାକ ଯେଣୁ ତୁମ୍ଭେ ହେଲେ ଶୁଣ,
ଦୀନବନ୍ଧୁ ନାମ ତେଣୁ ବହିଛ ଆପଣ,
ଏ ଦୀନ ଜନର ଦୁଃଖ ଫେଡ ଦୟାକରି । । ୪ ।

ଦୁଃଖୀ ଜନେ କର ଦାନ ଦୟା ଅକାତରେ,
ତେଣୁ ଦୟାନିଧି ତୁମ୍ଭ ନାମ ଜଗତରେ,
ମୋ ବେଳକୁ ନ ହୋଇ କମ୍ପା ହୁଅଛି ଭିକାରି ? । ୫ ।

କାତରେ ଡାକିଲେ ଯେଣୁ କରୁଣା ଟିକେ କର,
ତେଣୁ ବହିଅଛ ନାମ କରୁଣା ସାଗର,
ମୋ କଷ୍ଟ ଫେଡ଼ କଣାଏ କରୁଣା ବତରି । । ୬ ।

ମୋ ଦୁଃଖରେ ନ ତରିଲେ କିବା ତୁମ୍ଭ ପ୍ରାଣ ?
କର୍ଣ୍ଣେ ତେଣୁ ମୋ ଡାକକୁ ପ୍ରଭୁ କି ନ ଶୁଣ ?
ବହିବ ବ୍ରହ୍ମାଣ୍ଡେ ତେବେ କମ୍ପା ଗାକ ଧରି ? । ୭ ।

—o—

Digitized by srujanika@gmail.com

## ୨୦. ସ୍ୱର୍ଗିଦେବ ଥାଇ ଯେବେ ଭିକ୍ଷା ନଦେଇ

ସ୍ୱର୍ଗିଦେବ ଥାଇ ଯେବେ ଭିକ୍ଷା ନ ଦେଇ
ଗୁହାରି କରିବ କାହା ଆଗେ ମୁଁ ଯାଇ ? (ଘୋଷା)

ମାଗିଥିଲେ କେବେ କିଛି ଧନ ରତନ,
ତେଣୁ କୋପ କରିଥାନ୍ତ ଅବା ଆପଣ,
ବିନା ଦୋଷେ ଏତେ ଦଣ୍ଡ ଦିଅ କିମ୍ପାଇ ? । ୧ ।

ଅସରନ୍ତି ଅଟେ ତୁମ୍ଭ ଧନ ଭଣ୍ଡାର,
ନ ମାଗୁଣୁଁ ଦିଅ ଜନେ ଯାଚ ସତ୍ୱର,
ଦିଅ ତାହା ତାର ଭଲ କି ମନ୍ଦ ପାଇଁ ? । ୨ ।

ସେ ଧନେ ବଢଇ ଲୋଭ ଦିନକୁ ଦିନ,
ମିଛ ମରୀଚିକା ପଛେ ଧାଏଁ ଟି ମନ,
ଅଜ୍ଞମିକା ଅହଙ୍କାର ତାକୁ ଘାରଇ । । ୩ ।

ନ ପଡ଼ଇ ତୁମ୍ଭ କଥା ଦିନେ ତା ମନେ,
ବିଷୟ ବାସନା ସଦା ମନକୁ ଟାଣେ,
ଏକାକୀ ଯାଏ ସେ ଶେଷେ କିଛି ନ ନେଇ । । ୪ ।

ଅନ୍ତିମ କାଳେ ଡାକିଲେ ନ ଶୁଣେ କାନେ,
କହ ତେବେ ଦିଅ ଧନ କାହିଁକି ଜନେ ?
ପର କାଳକୁ ସେ ଯଦି ଲୋଡ଼ା ନୁହଇ । । ୫ ।

ତେଣୁ ସେ ଧନରେ ମୋର ନାହିଁଟି ମନ,
କେବଳ ଚରଣେ ଆଶ୍ରା ମାଗେ ଏ ଦୀନ,
କର ପାରି ଏ ସଂସାରୁ ଜଗତ ସାଇଁ । । ୬ ।

——

Digitized by srujanika@gmail.com

## ୨୧- କି ମାଗିବି ପ୍ରଭୁ କେତେ ବା ମାଗିବି

କି ମାଗିବି ପ୍ରଭୁ କେତେ ବା ମାଗିବି କିଛି ତ ମୋହର ନାହିଁ,
କି ଦରବ ଦେବ କେତେ ଅବା ଦେବ କେତେ କାଳ ଥିବ ରହି ? (ଘୋଷା)

ମନ କଥା ଜାଣ ତୁମ୍ଭେ ନାରାୟଣ କି ଅବା କହିବି ମୁହିଁ,
ଯାହା ଲୋଡ଼ା ମୋର ସେତିକ ମାତର ଦିଅ ମୋତେ ଭବଗ୍ରାହୀ । ।୧।

ଧନ, ଜନ ମୋତେ ଯେତେ ଦେଉଥିବ ସେତେ ମୁଁ ମାଗୁଥିବଇଁ,
ଲୋଭ, ମୋହ, ମାୟା କାୟା ସଙ୍ଗେ ଛାୟା ସମ ସଦା ଥାଏ ରହି । ।୨।

ଦାରା, ସୁତ, ସୁତା ସବୁ ଅଟେ ମିଥ୍ୟା ସଙ୍ଗତେ ନଯାନ୍ତି କେହି,
ମାୟା ଜାଲେ ପଡ଼ି ପ୍ରାଣୀ ଭୋଗେ ଦୁଃଖ ସବୁ ମୋର ମୋର କହି । ।୩।

ଆସେ ଖାଲି ଖାଲି, ଯାଏ ଖାଲି ଖାଲି, ଶେଷେ ଛୁଇଁ ଏହି ମହୀ,
ଜାଣିଶୁଣି ସବୁ କ୍ଷଣିକ ସୁଖରେ ମାତେ ନାନା କଷ୍ଟ ସହି । ।୪।

ସବୁ ଦେଖି ଦେଖି ସଂସାରୀ ହେବାକୁ ମନ ମୋ ବଳଇ ନାହିଁ,
କାହିଁକି ବୃଥାରେ ଭୋଗିବି କଷଣ ଏ ମିଥ୍ୟା ସଂସାରେ ଥାଇଁ । ।୫।

କରେ ମୁଁ ମିନତି ଦିଅହେ ମୁକତି ଧନ, ଜନ ଲୋଡ଼ା ନାହିଁ,
ଆହେ ଦୟାନିଧି ଏ ଭବ ବାରିଧି ପାରକର ଦୟାବହି । ।୬।

—୦—

Digitized by srujanika@gmail.com

## ୨୨- ପ୍ରଭୁ ହେ ଏତିକ ମାଗୁଣି ମୋର

ପ୍ରଭୁ ହେ ! ଏତିକ ମାଗୁଣି ମୋର,
ଭଲରେ ଭଲରେ ଏ ଭବ ସାଗରୁ କରିଦେବ ମୋତେ ପାର ।
(ଘୋଷା)

ପାପ ତାପ ଯେତେ ଦୟା ବନ୍ଧୁ ତତ୍ତେ କରିଦେବ ସବୁ ଦୂର,
ଅନ୍ତିମ କାଳରେ ଅସଲ ବେଳରେ ନ କରିବ ମୋତେ ପର । ୧ ।

ସଂସାରର ମୋହ ମୋତେ ଅହରହ କଲା ପ୍ରଭୁ ହରବର,
ଭଲକୁ ଭୁଲିଲି ଭେଲରେ ମାତିଲି ମିଛ କଲି କାରବାର । ୨ ।

ନ ପଡ଼ିଲା ମନେ ତୁମ୍ଭ କଥା ଦିନେ, ଅସାର ଗଣିଲି ସାର,
ଦିନ ଗଲା ବିତି ଘୋଟିଆସେ ରାତି ଏବେ ହୁଏ ଡରଡର । ୩ ।

ବେଳ ଥାଉଁ ମୁହିଁ ହୋଇପାରି ନାହିଁ ପଢ଼ିଲିରୁ ହୁସିଆର,
ବଢ଼ି ବଢ଼ି ଏବେ ହେଲାଣି ଦୁର୍ବହ ମୋ ପରାଣ ପାପ ଭାର । ୪ ।

ତୁମ୍ଭେ ବିନା ନାଥ କେବଳ ସମର୍ଥ ହରିବାକୁ ଦୁଃଖ ମୋର,
ହେ କରୁଣାକର ଏ ହୀନ ଜନର ସବୁ ଦୋଷ କ୍ଷମା କର । ୫ ।

Digitized by srujanika@gmail.com

# ଶ୍ରୀଜଗନ୍ନାଥ ଜଣାଣ

## କାଳିଆ ! ଭକତ ଜନ ଗଳା ମାଳିଆ

କାଳିଆ ! ଭକତ ଜନ ଗଳା ମାଳିଆ,
ତିନି ଭୁବନେ ନାହିଁ ଠାକୁର ତୋ ଭଳିଆରେ ଠାକୁର ତୋ ଭଳିଆ । (ଘୋଷା)

ମହାଲକ୍ଷ୍ମୀ ଘରଣୀ, ମହାମାୟା ଭଉଣୀ,
ଓହାଳଣେ ବସିଅଛୁ ବଡ଼ଭାଇ ବଳିଆରେ । । ୧ ।

କାହାକୁ ତୁ ଉଦ୍ଧାରୁ, କାହାକୁ ତୁ ବଧାରୁ,
କାହାକୁ ରଖୁ ପୁଣି ଚକ୍ଷୁବାହା ଛଳିଆରେ । । ୨ ।

ତୁ ବିଷ୍ଣୁ, ତୁ ମାଧବ, ଦେବଙ୍କର ତୁ ଦେବ,
ତୁ ଅଟୁ ରାମ ପୁଣି କୃଷ୍ଣ ବାଙ୍କ ଚୂଳିଆରେ । । ୩ ।

ଅଟୁ ତୁ ପରଂବ୍ରହ୍ମ, ଅଟୁ ଯମର ଯମ,
ଏ ମାୟା ଭବ ପାରବାରକୁ ତୁ ନୋଳିଆରେ । । ୪ ।

ନାହିଁ ତୋ ଆଦି ଅନ୍ତ, ଅଟୁ ତୁ ଯେ ଅନନ୍ତ,
କହ ହେବ କେମନ୍ତ ହେ ସାମନ୍ତ !
କହ ହେବ କେମନ୍ତ ତୋ ଚରଣ ତଳିଆରେ । । ୫ ।

ନ ମାଗେ ଧନ ଜନ, ହେ ଜଗତ ଜୀବନ,
କେବଳ ମାଗେ ମୋକ୍ଷ ଏ ହୀନ କପାଳିଆରେ । । ୬ ।

—୦—

Digitized by srujanika@gmail.com

## ୨· ନ ପାରିଲି ତୁମ୍ଭଙ୍କୁ ଜାଣି

ନପାରିଲି ତୁମ୍ଭଙ୍କୁ ଜାଣି,
କିଏ ତୁମ୍ଭେ କହ ହେ ନୀଳମଣି । (ଘୋଷା)

କିଏ କହେ ନୀଳ ମାଧବ, "ବିଶ୍ବାବସୁ" ଶବର ଦେବ,
ନୀଳ କନ୍ଦରର, କଳ୍ପବଟ ମୂଳେ, ପୂଜା ପାଉଥିଲ ଅଛଇ ଶୁଣି । ।୧।

ଅବନ୍ତୀ ରାଇଜ ରାଜନ, ବିଷ୍ଣୁ ଭକ୍ତ ସେ "ଇନ୍ଦ୍ରଦ୍ୟୁମ୍ନ",
ତୁମ୍ଭଙ୍କୁ ନେବାକୁ ଅବନ୍ତୀ ରାଜ୍ୟକୁ ନ ପାରିଲା ନୀଳକନ୍ଦରୁ ଆଣି । ।୨।

"ବିଦ୍ୟାପତି" ଙ୍କ ଭାଗ୍ୟ ବଳେ, ଦେଖିଥିଲା ତୁମ୍ଭଙ୍କୁ ଡୋଳେ,
'ବିଶ୍ବାବସୁ' କନ୍ୟା 'ଲଳିତା' ଲଳନା, ଧନ୍ୟ ହେଲା ଧରି ଯାହାର ପାଣି । ।୩।

ସେ ବଂଶରୁ ଦଇତାପତି, କାଳ କ୍ରମେ ହେଲେ ଉତ୍ପତ୍ତି,
ଶବର ଭକତି ନ ଭୁଲି ଶ୍ରୀପତି ସେବକ ପଣରେ ରଖିଲ ପୁଣି । ।୪।

ନାରଦଙ୍କ ବାଣୀ ଭୂମିରେ 'ଇନ୍ଦ୍ରଦ୍ୟୁମ୍ନ' ଯଜ୍ଞ ଆଚରି,
ଜନମନଙ୍କ ସ୍ୱାର୍ଥେ ଯଜ୍ଞ ବେଦୀ ଗଢ଼ି ଦାରୁ ବ୍ରହ୍ମ ମୂର୍ତ୍ତି ସ୍ଥାପିଲେ ଆଣି । ।୫।

କିଏ କହେ ଶ୍ରୀକୃଷ୍ଣ ତୁମେ କଳିଯୁଗ ଦ୍ୱାରକା ଧାମେ,
'ଜରା' ଶବରର ଶରରେ ନିହତ ହୋଇ ପୂଜା ପାଅ ଶ୍ରୀକ୍ଷେତ୍ରେ ପୁଣି । ।୬।

ପ୍ରକୃତି ଓ ପୁରୁଷ ରୂପୀ, ଅଛ ତୁମ୍ଭେ ଜଗତ ବ୍ୟାପୀ,
ବିଷ୍ଣୁ, ରାମ, କୃଷ୍ଣ, ବୁଦ୍ଧ, ଗଣନାଥ ତୁମ୍ଭେ ଅଟ ସବୁ ହେ ଚକ୍ରପାଣି । ।୭।

———

Digitized by srujanika@gmail.com

## ୩- ଜଗନ୍ନାଥ ତୁମ୍ଭେ ନାଥ ନୁହଁ ଖାଲି ଜଗତର

ଜଗନ୍ନାଥ, ତୁମ୍ଭେ ନାଥ, ନୁହଁ ଖାଲି ଜଗତର,
ଜଗତ ରୂପକ ନାଥ ତୁମ୍ଭେ ହେ ପରମେଶ୍ୱର । (ଘୋଷା)

ନିଜକୁ ଗଢ଼ିଛ ନିଜେ, ଧରାଧାମେ ହୋଇ ବିଜେ,
ଯୁଗେ ଯୁଗେ କେତେ ରୂପେ ହୁଅ ତୁମ୍ଭେ ଅବତାର । ।୧।

ଚକା ନୟନକୁ ଦେଖି, ଆଖି ମୋ ରହଇ ଲାଖି,
ପତିତପାବନ ବାନା ଉଡ଼େ ନଭେ ଫର ଫର । ।୨।

ପତିତ ଉଦ୍ଧାର ପାଇଁ, କସିଛ ଭୁଜ ମେଲାଇ,
ପତିତପାବନ ନାମ ବହିଛ ଆହେ ଠାକୁର । ।୩।

ଜାତି, ବର୍ଣ୍ଣ, ଧର୍ମ ହୁଡ଼ି, ଭକ୍ତ ଜନେ ନିଅ ଲୋଡ଼ି,
ନ ପାର ଭକ୍ତକୁ ଛାଡ଼ି ହେ ପ୍ରଭୁ ଭକ୍ତ ବତ୍ସଳ । ।୪।

ଚଉଦ କୋଟି ବ୍ରହ୍ମାଣ୍ଡ, ତୁମ୍ଭ ଶ୍ରୀଚରଣେ ରୁଣ୍ଡ,
ତେଣୁ ଏ ଜଗତ ରୂପୀ ନାଥ ହେ କରୁଣାକର । ।୫।

ଯେ ତୁମ୍ଭଙ୍କୁ ସବୁଠାରେ, ଦେଖୁଥାଏ ସବୁଥିରେ,
ତା ଅନ୍ତର ଭାବ ଜାଣି ପାଶେ ଥାଅ ନିରନ୍ତର । ।୬।

ଯେ ତୁମ୍ଭଙ୍କୁ କରେ ଭୟ, ତୁମ୍ଭ ପାଦେ ରଖେ ଲୟ,
ହୁଏ ସେ ସଦା ନିର୍ଭୟ ନ ଥାଏ କାହାକୁ ଡ଼ର । ।୭।

ତୁମ୍ଭେ ଜଗତ ଜୀବନ, ଜଗତ ତୁମ୍ଭ ଭିଆଣ,
ତୁମ୍ଭ ନାମ ଜପି ଜନେ ଜଗତ୍ତୁ ହୁଅନ୍ତି ପାର । ।୮।

---

Digitized by srujanika@gmail.com

## ୪- ହେ ଜଗନ୍ନାଥ ! କରନା ମୋତେ ଅନାଥ

ହେ ଜଗନ୍ନାଥ ! କରନା ମୋତେ ଅନାଥ,
ନାହିଁ ମୋର ସାହା କେହି ଚଉବାହା, ଖୋଜ ନ ପାଏ ମୁଁ ପଥ । (ଘୋଷା)

ତୁମ୍ଭେ ମୋର ପିତା, ତୁମ୍ଭେ ମୋର ମାତା, ତୁମ୍ଭେ ମୋର ପ୍ରାଣନାଥ,
ତୁମ୍ଭେ ମୋ ନୟନ, ତୁମ୍ଭେ ମୋର ଧନ, ପାରିକର ଧରି ହାତ । ।୧।

ଏ ଭବ ସାଗରେ ତୁମ୍ଭର କୃପାରେ ପ୍ରାଣୀ ହୁଏ ଆତଯାତ,
ତୁମ୍ଭ କୃପା ବିନୁ ନ ପାରନ୍ତି ତିଷ୍ଠି ତପନ, ଶଶୀ, ନକ୍ଷତ୍ର । ।୨।

ବଡ ଦେଉଳରେ ବସିଛ ମଝାରେ ଊର୍ଦ୍ଧ୍ୱେ ଟେକ ବେନ ହାତ,
ଦକ୍ଷିଣରେ ଦେବୀ ସୁଭଦ୍ରା ଭଗିନୀ ବଳଭଦ୍ର ଜ୍ୟେଷ୍ଠ ଭ୍ରାତ । ।୩।

ଯେ ଯାହା ଯାଚିଲେ କିଛିତ ନ ଘେନ ଅଟେକି ଏ କଥା ସତ ?
ଏତେ ନଇବେଦ୍ୟ ହଅନ୍ତି କାହିଁକି ନିତି ଭକ୍ତେ ଶତଶତ । ।୪।

ମେଣ୍ଟ ତୁମ୍ଭେ ବହି କିଛି ଖାଅନାହିଁ ଅଟେ ଏ କଥା ଅଦ୍ଭୁତ,
ତାହା ବିନା ତୁମ୍ଭ ମହତ ପଣିଆ ଅଟେ ତୁମ୍ଭ ବଶେଷତ୍ୱ । ।୫।

ତୁମ୍ଭ କୃପା ଦୃଷ୍ଟି କରିଅଛି ସୃଷ୍ଟି ବିଚିତ୍ରମୟ ଜଗତ,
ତୁମ୍ଭ କୋପ ଦୃଷ୍ଟି ଏ ସୁନ୍ଦର ସୃଷ୍ଟି କରିପାରେ ଭସ୍ମୀଭୂତ । ।୬।

ଜଗତର ନାଥ ବୋଲି ଜଗନ୍ନାଥ ଜଗତେ ତୁମ୍ଭେ ବିଦିତ,
ଶରଣ ରକ୍ଷଣ କର ହେ ତାରଣ ଜଣାଉଛି ଯୋଡ଼ ହାତ । ।୭।

Digitized by srujanika@gmail.com

## ୪- ଆହେ ଚକ୍ରଧର ଦୟା କରି ଦୂର କର ଦୁଃଖ ମୋର

ଆହେ ଚକ୍ରଧର !
ଦୟା କରି ଦୂର କର ଦୁଃଖ ମୋର । (ଘୋଷା)

ଗଜ ଡ଼ାକ ଶୁଣି କ୍ଷେତ୍ର ବାସୀ ଚକ୍ର ପେଶି ନକ୍ର ଥିଲ ନାଶି,
ଦୁଃଖୀ ଜନ ଡାକ କର୍ଣ୍ଣେ ନ ଶୁଣୁଛ କରିଥିଲେ ଦୋଷ କ୍ଷମା କର । ୧ ।

ଅଟ ତୁମ୍ଭେ ପରା କୃପାସିନ୍ଧୁ, କର ଅନୁଗ୍ରହ କୃପା ବନ୍ଧୁ,
କରୁଣା ବାରିଧି ଆହେ କ୍ଷମାନିଧି ଦୟା କର ନ ହୋଇ ନିଷ୍ଠୁର । ୨ ।

ଦୀନବନ୍ଧୁ ନାମ ଅଛ ବହି, ଦିନେ ଦୀନେ ଦୟା କଲନାହିଁ,
କଣାଏ କରୁଣା କଲେ କି ହେ ଊଣା ହେବ ତୁମ୍ଭ କରୁଣା ସାଗର । ୩ ।

ପତିତପାବନ ତୁମ୍ଭ ନାମ, ପତିତ ପ୍ରତି ନ ହୁଅ ବାମ,
ପତିତ ପାବନ ବାନା ଉଡ଼ୁଥାଇ ନୀଳଚକ୍ରେ ସଦା ଫର ଫର । ୪ ।

ଆର୍ତ୍ତଜନେ କୃପା କର ଦାନ, ତୁମ୍ଭେ ଅଟ ପରା ଆର୍ତ୍ତତ୍ରାଣ,
ଅନାଥର ନାଥ ହେ ଜଗତ ନାଥ ବିପଦ ସାଗରୁ ପାରିକର । ୫ ।

—o—

Digitized by srujanika@gmail.com

## ୭- ବଡ଼ ଦେଉଳର ଦାରୁ ଦେବତା ହେ

ବଡ଼ ଦେଉଳର ଦାରୁ ଦେବତା ହେ ! ନାହିଁ କି ତୁମ୍ଭର କର୍ଣ୍ଣ ?
ଜଗନ୍ନାଥ ନାମ ବହିଅଛ ପରା ଭୁଲି ଜାତି, ଧର୍ମ, ବର୍ଣ୍ଣ,
ଯେତେ ମୁଁ ଡାକିଲେ କାହିଁକି ନ କର ମୋ ମନ ବାଞ୍ଛା ପୂରଣ ? (ଘୋଷା)
ଦାରୁ ନାମ ତାର ହୋଇଅଛି ଯେଣୁ ଅଛି ତହିଁରେ ଦର୍ଶନ,
ସବୁ ଦର୍ଶନର କେନ୍ଦ୍ର ବିନ୍ଦୁ ତୁମ୍ଭେ ଆହେ ପ୍ରଭୁ ସୁଦର୍ଶନ,
ତୁମ୍ଭ ରୂପ, ବର୍ଣ୍ଣ, ମହିମା ମଧ୍ୟରେ ଦର୍ଶନ ହୋଇଛି ପୂର୍ଣ୍ଣ । ।୧।
ରାମ ଅବତାରେ ମୋକ୍ଷ କରିଅଛ କେତେ ତପୀ ପାପୀଗଣ,
ବୌଦ୍ଧ ଅବତାରେ ହେଲ ହେ କାହିଁକି ତୁମ୍ଭେ ଏତେ ନିଦାରୁଣ ?
ନିଜେ ବିଶ୍ୱକର୍ମା ରୂପେ ଦ୍ୱିଜେ ହୋଇ କଲ ନିଜକୁ ନିର୍ମାଣ । ।୨।
କୃଷ୍ଣ ଅବତାରେ ଅଙ୍ଗଦ ଛଳରେ ଇଚ୍ଛାରେ ହେଲ ନିଧନ,
ଶିଆଳୀ ଲତାରେ ଜରା ଶବରର ଶରରେ ଦେଇ ଜୀବନ,
ସୃଷ୍ଟି କର୍ତ୍ତା ହୋଇ ସ୍ୱଇଚ୍ଛାରେ ଦେହ ତ୍ୟାଗ କର ଯେ ଆପଣ । ।୩।
ଯୁଗେ ଯୁଗେ ତୁମ୍ଭେ ଅବତାର ହୋଇ କରିଛ ଦୁଷ୍ଟ ଦଳନ,
କରିଛ ନିଜର ପାପ ପ୍ରାୟଶ୍ଚିତ ନିଜେ ବନ୍ଧଣ କଷଣ,
ଯୁଗେ ଯୁଗେ ପୁଣି ପାପ ଭାର ନାଶି ଧର୍ମ କର ସଂସ୍ଥାପନ । ।୪।
ଯେ ଯାହା ଯାଚଇ ସେ ଯାହା ଦିଅଇ ନ କର କିଛି ଗ୍ରହଣ,
ତୁମ୍ଭର ବିଗ୍ରହ ଅଦ୍ଭୁତ ପ୍ରକାର ଅଟେ ସବୁଠାରୁ ଭିନ୍ନ,
କିଏ କହେ ତୁମ୍ଭେ ଚକା ନୟନରେ ଭକତ ଗୁହାରି ଶୁଣ । ।୫।
ଯୋଗ, ଯାଗ, ତପ, କୋପ ସବୁ ଅଟେ ତୁମ୍ଭ ନିକଟେ ସମାନ,
ନ ହୋଇଣ ପ୍ରୀତ ବିନା ଈର୍ଷାନ୍ୱିତ ନ୍ୟାୟ କର ବିତରଣ.
ଭକ୍ତି ରସ ବିନୁ ଅନ୍ୟ କେଉଁ ରସେ ସନ୍ତୁଷ୍ଟ ନ ହୁଏ ମନ । ।୬।
ତୁମ୍ଭେ ଭକ୍ତ ବନ୍ଧୁ ଭକ୍ତ ତୁମ୍ଭ ବନ୍ଧୁ କରିଯାଇଛ ପ୍ରମାଣ,
ଭକ୍ତି ଭାବେ ବଶ ହୁଅନ୍ତି ଭବେଶ ଭକ୍ତ ତୁମ୍ଭ ପ୍ରାଣ ଧନ,
ମାରି ଅବା ତାରି କରୁଣା ସାଗର ଶ୍ରୀପଦେ ପଶେ ଶରଣ । ।୭।

---

Digitized by srujanika@gmail.com

## ୭- ରସିକ ପଣରେ ସରଯାଇଛି ସେ

ରସିକପଣରେ ସରଯାଇଛି ସେ ରସିକ ରାଜ କାଳିଆ,
ନାନା ଜାତି ବେଶ ନିତି ହେଉଥାଏ ବସି କୌସ୍ତୁଭ ମାଳିଆ । (ଘୋଷା)

ଘଣ୍ଟ, ଘଣ୍ଟା, ତୁରି, ଭେରି ନ ବାଜିଲେ ନ ଭାଙ୍ଗଇ ନିଦ ଭାର,
ଦାନ୍ତ ମଜାଠାରୁ ମାର୍ଜନା ପର୍ଯ୍ୟନ୍ତ ଖଞ୍ଜା ଥାଏ ବାସ ନୀର,
ଚନ୍ଦନ, କୁଙ୍କୁମ, ଆରସି, ପାନିଆଁ ଖଞ୍ଜାନ୍ତି ସେବା ପାଳିଆ । ।୧।

ପାଟ ପୀତାମ୍ବର କୁଞ୍ଚ କୁଞ୍ଚ କରି ଶ୍ରୀଅଙ୍ଗ କରନ୍ତି ବେଶ,
ହୀରା, ନୀଳା, ମୋତି, ମାଣିକ୍ୟ ସୁବର୍ଣ୍ଣ ଶୋଭାପାଏ ଚଉପାଶ,
ମସ୍ତକରେ ମଣି, ନାସାରେ ବସୁଣୀ ଦିଶଇ କେଡେ ବଢ଼ିଆ । ।୨।

ଖଇ, ଦହି ସଙ୍ଗେ ଶ୍ରୀଫଳ ସୁସ୍ୱାଦୁ ପକ୍ୱ ରମ୍ଭା ଫଳ ଆଦି,
ଖଞ୍ଜା ହୋଇଥାଏ ଗୋପାଳ ବଲ୍ଲଭ ଭୋଗ ଲାଗି ବହୁବିଧି,
କେତେ ଧୂପ, ଦୀପ, କୁସୁମ, ତୁଳସୀ ଅର୍ଚ୍ଚନାରେ ହୁଏ ଦିଆ । ।୩।

ସକାଳ ଧୂପକୁ ଖଞ୍ଜା ହୋଇଥାଏ ଝିଲି, କାନ୍ତି, ମାଠପୁଳି,
କାନିକା ଖେଚୁଡ଼ି ଏଣ୍ଡୁରି, ବୁନ୍ଦିଆ, ଖିରି, ଶାଗ, ହଂସକେଳି,
ରନ୍ଧେ ସୁପକାର ଅତି ଚମତ୍କାର ଖଞ୍ଜାଇ ଭୋଗ କୁଡ଼ୁଆ । ।୪।

ଗଜା, ମନୋହର, ମାଣ୍ଡୁଆ, ଆରିଷା, ମଗଜଲଡୁ, କାକରା,
ଫେଣି, ପୁଳି, କେଳି, କାନ୍ତି, ନାନମାନ, ପାରିଜାତକ, ଶାକରା,
ଛପନ ପ୍ରକାର ସଙ୍ଖୁଡ଼ି, ଶୁଖିଲା ଭୋଗ ନିତି ହୁଏ ଦିଆ । ।୫।

ସଞ୍ଜ ଧୂପ ବେଳେ ରନ୍ନ ବେଦୀ ପରେ ନକ୍ଷତ୍ର ଉଦୁଡ଼ି ଜଳେ,
ଲମ୍ବିଥାଏ ନାନା ସୁବାସିତ ପୁଷ୍ପ ଦଉଣା ଗଜରା ଗଳେ,
ତିନି ଧୂପ ସଙ୍ଗେ ପାଞ୍ଚ ଅବକାଶ ହୁଏଟି ନିତି ଦିନିଆ । ।୬।

Digitized by srujanika@gmail.com

ପହୁଡ଼ ବେଳରେ ଜୟଦେବଙ୍କର ଗୀତଗୋବିନ୍ଦର ପଦ,
ଦେବ ଦାସୀଗଣ ନ କଲେ ଗାୟନ ନ ଆସଇ ନେନେ ନିଦ,
ରତ୍ନ ପଲଙ୍କରେ ବିଜେ ହୋଇଥାଏ ଭୁଲି ତଳପ ତକିଆ । ।୭।

ଗ୍ରୀଷ୍ମ ଦିନେ ହୁଏ ଚନ୍ଦନ ବେଶ ସେ ଚନ୍ଦନ ଯାତ୍ରା ଆଳରେ,
ରଥେ ଚଢ଼ି ବଡ଼ଦାଣ୍ଡେ ଯାତ୍ରା କରେ ଆଷାଢ଼େ ବର୍ଷା କାଳରେ,
ପଉଷ ଶୀତରେ ପହିଲ ଭୋଗରେ ଖେଚୁଡ଼ି ହୁଅଇ ଦିଆ । ।୮।

ବସନେ, ଭୂଷଣେ, ଭୋଜନେ, ଶୟନେ, ରସିକତା ଥାଏ ପୂରି,
ସେ ଯେ ରସନିଧି ସେ ଯେ ଲୀଳାନିଧି ସେ ଯେ ଦୟାନିଧି ହରି,
ସ୍ୱର୍ଗ, ମର୍ତ୍ତ୍ୟ, ନାଗ ତିନ ଭୁବନରେ କେହି ନାହିଁ ତା ଭଳିଆ । ।୯।

ସେ ଅଟଇ ଭୋଗୀ, ସେ ଅଟଇ ଯୋଗୀ ସେ ଅଟେ ପରମେଶ୍ୱର,
ପାପ ବିନାଶନ ପତିତ ତାରଣ ପାଇଁ ତାର ଅବତାର,
ଭବ ସାଗରୁ ସେ କରିପାରେ ପାରି ନିଜେ ହୋଇ ନାଉରିଆ । ।୧୦।



Digitized by srujanika@gmail.com

## ୮-ତୁମ୍ଭେ ଜଗତର ନାଥ ତେଣୁ ମୋର ନାଥ

ତୁମ୍ଭେ ଜଗତର ନାଥ ତେଣୁ ମୋର ନାଥ,
କାହାକୁ କହିବ ଦୁଃଖ କଲେ ହେ ଅନାଥ । (ଘୋଷା)
କହିଲେ ଅନାଥ ମୋତେ ଜଗନ୍ନାଥ ନାମ,
କାହିଁକି କହିବ ବସି ନୀଳାଚଳ ଧାମ,
ବାଞ୍ଛାନିଧି ପୂର୍ଣ୍ଣକର ମୋର ମନୋରଥ । ୧ ।
ପତିତପାବନ ତୁମ୍ଭେ ମୁଁ ପତିତ ଜଣେ,
କର ମୋ ପାତକ ନାଶ ଦୟାକରି କ୍ଷଣେ,
କେହି ନାହିଁ ତୁମ୍ଭ ବିନୁ ତହିଁକି ସମର୍ଥ । । ୨ ।
ତୁମ୍ଭେ ଅଟ ଦୀନବନ୍ଧୁ ମୁଁ ଯେ ଅତି ଦୀନ,
ଡାକ ଡାକ ତୁମ୍ଭଙ୍କୁ ହେ ଗଲା ମୋର ଦିନ,
ବାରେ ଦୟା କରି ପ୍ରଭୁ ଫେଡ଼ ମୋ ଆରତ । ୩ ।
ତୁମ୍ଭେ ଅଟ ଅନ୍ତର୍ଯ୍ୟାମୀ ମୋ ଅନ୍ତର ବ୍ୟଥା,
ନ ବୁଝିବ ଯେବେ ହେବ ତୁମ୍ଭ ନାମ ବୃଥା,
କାହିଁକି ଡାକିବ ଏତେ ଯୋଡ଼ି ବେନି ହାତ । ୪ ।
ତୁମ୍ଭେ ସର୍ବ ଶକ୍ତିମାନ ମୁଁ ଯେ ଶକ୍ତିହୀନ,
କଣାଏ ମାତ୍ରକ ଶକ୍ତି କର ହେ ପ୍ରଦାନ,
ଥକି ଗଲିଣି ମୁଁ ଡାକ ଡାକି ଅବିରତ । ୫ ।
ସର୍ବଦ୍ରଷ୍ଟା ଅଟ ତୁମ୍ଭ ମୋ ଦୁଃଖ ନୟନେ,
ଦେଖା ନ ଯାଏ ତୁମ୍ଭଙ୍କୁ କହ କି କାରଣେ ?
ତୁମ୍ଭେ ଯେବେ ଆର୍ତ୍ତତ୍ରାଣ ଫେଡ଼ ମୋ ଆରତ । ୬ ।
ନ ଫେଡ଼ିଲେ ଦୁଃଖ ମୋର ସହିବାକୁ ଶକ୍ତି,
ଦିଅ ମୋତେ ଦୀନବନ୍ଧୁ କରେ ମୁଁ ମିନତି,
ତୁମ୍ଭ ଆଶ୍ରା ବିନୁ ମୋର ନାହିଁ ଅନ୍ୟ ପଥ । ୭ ।
ତୁମ୍ଭର ଆଜ୍ଞାରେ ଚନ୍ଦ୍ର ସୂର୍ଯ୍ୟ ଆତଯାତ,
ସାଗର ନ ଲଙ୍ଘେ ତଟ, ବହଇ ମରୁତ,
ସ୍ଥାବର ଜଙ୍ଗମ ସବୁ ସିନା ତୁମ୍ଭ କୃତ । ୮ ।

Digitized by srujanika@gmail.com

## ୯- ବନ୍ଧୁ ମହାନ୍ତର ବନ୍ଧୁ ହୋଇଥିଲ

ବନ୍ଧୁ ମହାନ୍ତର ବନ୍ଧୁ ହୋଇଥିଲ ବୋଲି କେବଳ ଶୁଣିଛୁ କାନ,
ମିଛ କିବା ସତ ଆହେ ଜଗନ୍ନାଥ ଦେଖିନାହିଁ ସିନା ମୋ ନୟନ,
ମୋ ବନ୍ଧୁ ହେବାକୁ, ହେଉଛ ବିମୁଖ, କାହିଁକି କହ ଚକାନୟନ (ଘୋଷା)

ଯାହା ନ ଦେଖିବ ନିଜ ନୟନେ ପରତେ ନ ଯିବ ଗୁରୁ ବଚନେ,
ଗୁରୁଜନଙ୍କର ମହତ ବଚନ ହୋଇକି ପାରିବ କେବେ ଆନ ? । ୧ ।

ଭାଗ୍ୟ ଦୋଷ ଏହା ଅଟେ କି ମୋର, ଭାଗ୍ୟଦାତା ତୁମେ ପରମେଶ୍ୱର,
କାହା ଦୋଷ ଦେବି କାହାକୁ କହିବି ହେବ ଯେବେ ତୁମ୍ଭେ ନିଦାରୁଣ । । ୨ ।

ତୁମ୍ଭେ ଦୀନବନ୍ଧୁ ମୁଁ ଜଣେ ଦୀନ, ମୋ ଦୁଃଖକୁ ମୁଦିଦେଲେ ନୟନ,
କିପରି ପାହିବ ମୋ ଦୁଃଖ ରଜନୀ ବିଦ୍ୟା ବୁଦ୍ଧି ମୋର ହେଲା ଶୂନ୍ୟ । ୩ ।

ଭିକ୍ଷା କରି ଅବା ଦିଅନ୍ତୁ ଭୋଗ, କଷ୍ଟିତ ନ ଦେନ ହେ ମହାଭାଗ,
ଭକତର ବନ୍ଧୁ ତୁମ୍ଭେ ଭକ୍ତ ବନ୍ଧୁ ଭକତ ଅଟେ ତୁମ୍ଭ ଜୀବନ । । ୪ ।

ତୁମ୍ଭ ପାଦ ପଦ୍ମେ ଥାଉ ମୋ ମନ, ସେତିକି ଶକ୍ତି ଦିଅ ଭଗବାନ,
ଏତିକି ପ୍ରାର୍ଥନା, କରୁ ମୋର ପ୍ରେମା, ଧନ ଦଉଲତେ ନାହିଁ ମନ । । ୫ ।

—୦—

Digitized by srujanika@gmail.com

## ୧୦- ହେ ପ୍ରଭୁ ଚକାନୟନ !

ହେ ପ୍ରଭୁ ଚକାନୟନ !
ନୟନ ଦର୍ପଣେ ନିତ ତୁମ୍ଭ ମୁଖ କରୁଥିବଟି ଦର୍ଶନ । (ଘୋଷା)

ଦୂରେ ରହି ନିତ ଜଣାଏ ପ୍ରଣତି ପ୍ରଭୁ ପତିତପାବନ
ନୟନ ନୀରେ ନିତ ଧୌତ କରେ ସ୍ୱପନେ ତୁମ୍ଭ ଚରଣ । ।୧।

ତୁମ୍ଭ ଭୋଗ ପାଇଁ ନିତ ରାନ୍ଧି ଥାଇ ମନେ ମନେ ଶାଳି ଅନ୍ନ
ତହିଁ ସଙ୍ଗେ ପୁଣି ତୁମ୍ଭ ମନ ଜାଣି ବାଢେ ନାନାଦି ବ୍ୟଞ୍ଜନ । ।୨।

ତୁମ୍ଭ ପୂଜା ପାଇଁ ଭକତି ପୁଷ୍ପରେ ଗୁନ୍ଥିଥାଏ ମାଳାମାନ
ସଞ୍ଜ ସକାଳରେ ତୁମ୍ଭ ଶ୍ରୀପଦ୍ମରେ କରେ ତାହା ନିବେଦନ । ।୩।

ତୁମ୍ଭ ଅଙ୍ଗଲାଗି ଚନ୍ଦନ ତୁଳସୀ କରୁଥାଏ ମୁଁ ସେବନ
ଦୂରେ ଥାଇ ଯେବେ ହୁଅ ଦରଶନ ପାଶେ କିବା ପ୍ରୟୋଜନ ? ।୪।

ଭକତ ଭାବରେ ଦୂରତ୍ୱ ଏ ପାଶ ଅସାଧ୍ୟ ହୁଏ ସାଧନ,
ଧୂପ, ଦୀପ, ମାଳ, ନୈବେଦ୍ୟ ସକଳ ନୁହେଁଟି ତାକୁ ସମାନ । ।୫।

ଲକ୍ଷ ଯୋଜନରେ ଗଜ ଡାକ ଶୁଣି କଲ ତା ଦୁଃଖ ମୋଚନ
କୋଟି ବସ୍ତ୍ର ଦାନ କଲ ନାରାୟଣ ଶୁଣି ଦ୍ରୌପଦୀ ଜଣାଣ । ।୬।

ଏହା ଯେବେ ସତ ଆହେ ଜଗନ୍ନାଥ ଫେଡ଼ ମୋ ହୃଦ କଷଣ
ଧନ ମାଗୁନାହିଁ ଜନ ମାଗୁନାହିଁ ମାଗେ ମାତ୍ର ଦରଶନ । ।୭।

—୦—

Digitized by srujanika@gmail.com

## ୧୧- ଜଗତ ଠାକୁର ବୋଲି

ଜଗତ ଠାକୁର ବୋଲି, ଡ଼ାକନ୍ତି ଜଗତ ଜନେ
ଜଗତକୁ ଠକ ପୁଣି ପୂଜା ପାଅ ପ୍ରଭୁ ପଣେ । (ଘୋଷା)

ଠକ ବୋଲାଅ ଠାକୁର, ଠିକେ ଘସିଲ ଏ ଶିର
ଚୂମ ଅପଯଶ ବାନା ଉଡ଼ଇ ତିନି ଭୁବନେ । ।୧।

ଯେ ଦିଏ ଖିଣ୍ଡ ଖେଚେଡ଼ି, ତା ଶିରରେ ବାନ୍ଧ ଶାଢୀ
ଅଦିଆ ଡ଼ାକକୁ ପ୍ରଭୁ ଦିଅ ନାହିଁ କାନ ଦିନେ । ।୨।

ଏ ହାତସର ଦିଅ ଯାହା, ଆର ହାତେ ନିଅ ତାହା
ବଳିଅଛ ଚଉବାହା ନାମ ପ୍ରଭୁ ଅକାରଣେ । ।୩।

ଚକାଡୋଳା ନାମ ଧରି, ଚକାନୟନେ ହେ ହରି
ଦେଖି ନ ଦେଖିଲ ପରି ମୋ ଦୁଃଖ ରହୁ ମନେ । ।୪।

ଦିଅ ଯେତେ ଧନ ଜନ, ସେ ସବୁ ଦୁଃଖ କାରଣ
ନାହିଁ ସେ ସୁଖେ ମୋ ମନ ଆଶ୍ରା ମାଗେ ଶ୍ରୀଚରଣେ । ।୫।

—o—

Digitized by srujanika@gmail.com

## ୧୨- ଚାଲ ଯିବା କ୍ଷେତ୍ର ରାଜକୁ

ଚାଲ ଯିବା କ୍ଷେତ୍ର ରାଜକୁ, ଦର୍ଶନ କରିବା ଦେବରାଜଙ୍କୁ
ତୀର୍ଥରାଜ ଜଳେ ବୁଡ଼ ପକାଇବା ପବିତ୍ର କରିବା ପାପ ନେତ୍ରକୁ । (ଘୋଷା)
କରି ଜଗନ୍ନାଥ ଦର୍ଶନ, ଧନ୍ୟ ହେବ ନର ଜୀବନ
ଗରୁଡ଼ ପଛରେ ରହି କରଯୋଡ଼ ଦୁଃଖ ଜଣାଇବା ଚକାଡୋଳାଙ୍କୁ । । ୧ ।
ସେ ବଡ ଦେଉଳ ବେଢ଼ାରେ ବୁଲି ସାଙ୍ଗ ମେଳେ ଆଡାରେ
ଗୀତା ଭାଗବତ ନାନା ଧର୍ମ ତତ୍ତ୍ୱ କରିବା ଶ୍ରବଣ ଡେରି କର୍ଣ୍ଣକୁ । । ୨ ।
ବିମଳା, କମଳା, ଶୀତଳା, ସରସ୍ୱତୀ, ବାଟମଙ୍ଗଳା
କାଶୀ ବିଶ୍ୱନାଥ, ବଟ ବିନାୟକ ପାଦତଳେ ସମର୍ପିବା ଚିତ୍ତକୁ । । ୩ ।
କଳ୍ପବଟ, ସାକ୍ଷୀ ଗୋପାଳ, ଆନ ଦେବଦେବୀ ସକଳ
ହୋଇଛନ୍ତି ଠୁଳ ଯେଉଁ ନୀଳାଚଳ ଅଙ୍ଗେ ବୋଳିହେବା ତାର ରେଣୁକୁ । ୪ ।
ପଞ୍ଚତୀର୍ଥେ ସ୍ନାନ ଆଚରି, ହରିନାମ ମୁଖେ ଉଚ୍ଚାରି
ହୃଦୟୁ କଳୁଷ ଯେତେ ପାପ ତାପ ଧୋଇ ପକାଇବା କାଳ କାଳକୁ । । ୫ ।
ବାର ମାସେ ତେର ପରବ, ଭଲ ଭଲି ବେଶ ସରବ
ନୟନ ମନର ବିବାଦ ମେଣ୍ଟିବ ଦେଖି ସେ କାଳିଆ ଲୀଳା ଖେଳାକୁ । । ୬ ।
ଆନନ୍ଦ ବଜାରେ ବୁଲିଣ, ମହା ପରସାଦ ଭୁଞ୍ଜିଣ
ଆନନ୍ଦ ହୋଇଣ ହେଉଡ ମାରିଣ ପବିତ୍ର କରିବା ପାପ ଆତ୍ମାକୁ । । ୭ ।
ଶରଧା ବାଲିରେ ଶ୍ରଦ୍ଧାରେ, ବୁଲି ବୁଲି ବଡ଼ ଦାଣ୍ଡରେ
ସାଧୁ ସନ୍ଥ ଜନ, କରିବା ଦର୍ଶନ, କେତେ ଧର୍ମବନ୍ତ ଯୋଗୀମାନଙ୍କୁ । । ୮ ।
ସତେ କିବା ସେ ଭାଗ୍ୟ ହେବ, ଶ୍ରୀକ୍ଷେତ୍ରରେ ଏ ଜୀବ ଯିବ
ସ୍ୱର୍ଗକୁ ଦୁଆର ଅଟେ ସ୍ୱର୍ଗଦ୍ୱାର ସେହି ବାଟ ଦେଇ ଯିବା ସ୍ୱର୍ଗକୁ । । ୯ ।
ମୋକ୍ଷ ଦାତା ମୁକତି ଦାତା, ଅଟନ୍ତି ସେ ଜଗତ କର୍ତ୍ତା,
ତାଙ୍କ ପାଶେ ଥାଇ ତାଙ୍କ ନାମ ଧାୟୀ ଯାଉ ଏ ଜୀବନ ଚାହିଁ ତାହାକୁ । ୧୦ ।

—୦—

Digitized by srujanika@gmail.com

## ୧୩- କାଳିଆ ସୁନା ହେ ପ୍ରଭୁ କଲା ଶ୍ରୀମୁଖ

କାଳିଆ ସୁନା ହେ ପ୍ରଭୁ କଲା ଶ୍ରୀମୁଖ,
କାହିଁକି କର୍ଣ୍ଣେ ନ ଶୁଣ ଦିନେ ମୋ ଦୁଃଖ । (ଘୋଷା)

କରିନାହିଁ କିଛି ତ ଦୋଷ, କର କମ୍ପା ମୋଠାରେ ରୋଷ
କମଳ ଲୋଚନ ଜଗତ ଜୀବନ ଟିକା ନୟନରେ ହବୁତ ଦେଖ । ।୧।

କରୁଣାକର ଦୀନବନ୍ଧୁ, କମଳା ମଣି କୃପାସିନ୍ଧୁ
କାନ୍ଦୁ କାନ୍ଦୁ ମୋର ଦିନ ନ ସରଇ ଏ ଭବ ସାଗରୁ ମୋତେଟି ରଖ ।୨।

କେତେ ପାପୀ, ତପୀ, ପାମର, କରିଅଛ ତୁମେ ଉଦ୍ଧାର
କାହିଁକି ମୋ ପାଇଁ ହେ ଜଗତ ସାଇଁ ସବୁ ଜାଣିଶୁଣି ହୁଅ ବିମୁଖ । ।୩।

କାଳେ କାଳେ ଏ ଧରା ଧାମେ କେତେ ରୂପେ ଆସ ହେ ତୁମେ
କାହାକୁ ବିଦାର କାହାକୁ ଉଦ୍ଧାର କାହାକୁ ଦିଅ ହେ ସରଗ ସୁଖ । ।୪।

କିଏ କେତେ କରେ ବିନତି, କିଏ ମାଗେ ଧନ ସମ୍ପତ୍ତି
କିଛି ମାଗୁନାହିଁ ସେ ହବୁତ ମୁକ୍ତି ଦିଅ ମୋତେ ପ୍ରଭୁ କେବଳ ମୋକ୍ଷ । ।୫।

—0—

Digitized by srujanika@gmail.com

## ୧୪- ତୁମ୍ଭେ କି ହେ ସେହି ଠାକୁର

ତୁମ୍ଭେ କି ହେ ସେହି ଠାକୁର ?
ସତକରି କହ ଯାଇ ନଥିଲ କି କାଞ୍ଚି ରାଇଜକୁ କରି ସମର ? (ଘୋଷା)

କଳା ଧଳା ଘୋଡ଼ା ଚଢ଼ି ଦୁଇ ଭାଇ ପାଇକ ବେଶରେ ହୋଇ ବାହାର
'ମାଣିକ' ହାତରୁ ଦହି ଖାଇ ବନ୍ଧା ଦେଇଥିଲ ରତ୍ନ ମୁଦି ତୁମ୍ଭର । ।୧।

କେଉଁ ଜନ୍ମେ କିବା କରିଥିଲ ସେବା ସେହି ଗୋପାଳୁଣୀ ମାଣିକ ଗଉଡ଼
କଲ ଦରଶନ ଶ୍ରୀରଙ୍ଗ ଚରଣ ମାନବ ଜନ୍ମରୁ ହୋଇଲା ପାର । ।୨।

ଚଳନ୍ତି ବିଷ୍ଣୁ ପୁରୁଷୋତ୍ତମ ଦେବ ଗଜପତି ମହାରଥୀ ବୀରବର
ପ୍ରବଳ ଉତ୍କଳ ନରେଶ ନବ କୋଟି କର୍ଣ୍ଣାଟ କଳବର୍ଗାଧିଶ୍ୱର । ।୩।

କରନ୍ତି ସେ ସେବା ତୁମ୍ଭ ଶ୍ରୀପୟର ମାର୍ଜନା ଧରଣି ରଥ ଉପର
ଦେବଙ୍କୁ ଦୁର୍ଲଭ ଅଟେ ଯେଉଁ ପାଦ ପାଏକି ସହଜେ ସାମାନ୍ୟ ନର । ।୪।

କାଞ୍ଚି ରାଜା ମୂଢ଼ ନରସିଂହ ଦେବ ବୁଝି ନ ପାରିଣ ମାହାତ୍ମ୍ୟ ତାର
କଲା ପରିହାସ ଉତ୍କଳ ନରେଶେ ଚଣ୍ଡାଳ ବୋଲିଣ କରି ଧିକ୍କାର । ।୫।

କହିଲା ସେ ନୁହେଁ ଯୋଗ୍ୟ ଧରିବାକୁ କାଞ୍ଚି ଯେମା 'ପଦ୍ମାବତୀ'ର କର
ଭକ୍ତ ଅପମାନ ସହି ନ ପାରିଣ କାଞ୍ଚି ଅଭିଯାନେ ହେଲ ବାହାର । ।୬।

ଶ୍ରୀମନ୍ଦିର ତେଜି ଛଦ୍ମବେଶ ସାଜି ପ୍ରବେଶ ହୋଇଲ କାଞ୍ଚି ରାଜ୍ୟର
ଯୁଦ୍ଧେ ତାହା ଜିଣି ପଦ୍ମାବତୀ ଆଣି ଗଜପତି ମାନ କଲ ଉଦ୍ଧାର । ।୭।

କାଳେ କାଳେ ତୁମ୍ଭେ ଭକତ ବାନ୍ଧବ ଭକତ ଜୀବନ ଅଟେ ତୁମ୍ଭର
ତୁମ୍ଭେ ହେଲେ କ୍ଷୀର ଭକତ ଯେ ନୀର କ୍ଷୀର-ନୀର ଭବ ସଂସାରେ ସାର ।୮।

—୦—

Digitized by srujanika@gmail.com

## ୧୫- କାଳିଆ କି କୁହୁକ ଜାଣୁ

କାଳିଆ କି କୁହୁକ ଜାଣୁ ?
ଦେଖିଦେଲେ ଥରେ ଶ୍ରୀମୁଖକୁ ଚୋର ପାଶୋର ନ ଯାଏ ମନୁ । (ଘୋଷା)

ବସ୍ତାର ବସିଛ କମ୍ପାଇ ହସ୍ତକୁ ଆରେ ମୋ କାଳିଆ କାହ୍ନୁ ?
ଧନ ଦଉଲତ ଯେତେ ଯାହା ଦେଲେ ତିଳେ ମାତ୍ର ତ ନ ଘେନୁ । ୧ ।

ରାମ ଅବତାରେ ସୀତା ସ୍ୱୟଂବରେ ଭାଙ୍ଗିଥିଲୁ ଶିବ ଧନୁ
ଲଙ୍କାରେ ରାବଣ କରିଲୁ ନିଧନ ମୋକ୍ଷ କଲୁ ପାପୀ ଜନ୍ତୁ । ୨ ।

ସହସ୍ର ଗୋପୀଙ୍କ ମନ ତୁ ମୋହିଲୁ ବଜାଇ ମୋହନ ବେଣୁ
ଶଙ୍ଖ, ଚକ୍ର, ଗଦା, ପଦ୍ମ ତୋ ଆୟୁଧ କରେ ବହୁଅଛୁ ତେଣୁ । ୩ ।

କର୍ଣ୍ଣ ନାହିଁ ସିନା ନୟନରେ ତୁ ଯେ ସବୁରି ଗୁହାରି ଶୁଣୁ
ଡୋରି ଲଗାଇଣ ଜଗତ ଜନଙ୍କୁ ନିକଟକୁ ତୋର ଟାଣୁ । ୪ ।

ପାଦ ନାହିଁ ତୋର ତଥାପି ଏ ନର ମାଗେ ତୋର ପଦ ରେଣୁ
ବାମନାବତାରେ ବଳିକୁ ପାଦରେ ପାତାଳେ ରୁପିଲୁ ଯେଣୁ । ୫ ।

ନିତି ନିତି ତୁ ଯେ ଛପନ ପଉଟି ଭୋଗ ନଇବେଦ୍ୟ ଘେନୁ
ଚଉଦ ବ୍ରହ୍ମାଣ୍ଡ ତୋ ଉଦରେ ତୁଣ୍ଡ କିଛି ନାହିଁ ତୋହ ବନୁ । ୬ ।

ଦାରୁବ୍ରହ୍ମ ବପୁ ରୂପେ ପୂଜା ପାଉ ନୀଳାଚଳ ଧାମେ ଯେଣୁ
ମର୍ତ୍ତ୍ୟ ବଇକୁଣ୍ଠ ତେଣୁ ଏ ଶ୍ରୀକ୍ଷେତ୍ର ପବିତ୍ର ତା ପ୍ରତି ରେଣୁ । ୭ ।

କୈବଲ୍ୟ କଣାଏ ପାଇଲେ ତୋହର କଳୁଷ ନ ଛୁଏଁ ତନୁ
ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ବର୍ଗ ଫଳ ମିଳେ ତୋ ଚରଣୁ । ୮ ।

—୦—

Digitized by srujanika@gmail.com

## ୧୭- ଯାଉଛକି ଦେଖିବାକୁ ଶ୍ରୀକ୍ଷେତ୍ର ଗୋସାଇଁ

ଯାଉଛକି ଦେଖିବାକୁ ଶ୍ରୀକ୍ଷେତ୍ର ଗୋସାଇଁ ?
ଯିବାକୁ ମୋ ମନ ଥିଲେ ପାଶେ ଧନ ନାହିଁ । (ଘୋଷା)
ଜଣାଇବ ଦୁଃଖ ମୋର ଜଗା ଶ୍ରୀଚରଣେ
ଦେଖି ଯାଉଅଛ ଯାହା ତମ୍ଭେ ସ୍ୱ ନୟନେ
ରହିଅଛି ମୋ ଜୀବନ ସେହି ନାମ ଧ୍ୟାୟୀ । ୧ ।
ସବୁରି ଅନ୍ତର କଥା ଜାଣେ ସେ ଠାକୁର
ତଥାପି ହେ କହିଦେବ ମୋର ଏ ଖବର
କରେ ତା ପାଦେ ଜୁହାର ଏଠାରେ ଥାଇ । ୨ ।
ଥରେ ତାକୁ ଦେଖିବାକୁ ରହେ ଅଛି ମନ
କରିବ ପୂରଣ ତାହା ନ ଥିଲେ ବି ଧନ
ଦେଖିଲେ ସେ ରୂପ ରଥେ ମିଳ ମୁକ୍ତି ପାଇ । । ୩ ।
ଭକତର ଭଗବାନ କାଳିଆ ଠାକୁର
କଳିଯୁଗେ ଜଗନ୍ନାଥ ରୂପେ ଅବତାର
ପତିତପାବନ ବାନା ଦେଉଳେ ଉଡ଼ଇ । ୪ ।
ବଡ ଦେଉଳରେ ବିଜେ ରତ୍ନ ସିଂହାସନେ
ଦେଖୁଛି ସେ ଦୁନିଆଁକୁ ତା ଚକାନୟନେ
ତା ଦୃଷ୍ଟି ପଡନ୍ତେ ଦୁଃଖ ଯାଏ ପାଣି ହୋଇ । । ୫ ।
ଅନ୍ତର୍ଯାମୀ କାଳିଆର ଭୁଜ ହେ ଠାକୁର
ମନବାଞ୍ଛା ପୂର୍ଣ୍ଣ ହେବେ କରିବ ସେ ମୋର
ଯାହାର କରୁଣା ହେଲେ ସବୁ ସେ ମିଳଇ । ୬ ।
ଧନ, ଜନ, ଗୋପ, ଲକ୍ଷ୍ମୀ କିଛି ମାଗୁ ନାହିଁ
ଏ ଜୀବନ ଯାଉ ଚକା ନୟନକୁ ଚାହିଁ
ଗତି, ମୁକ୍ତି ଦାତା ଅଟେ ସେ ଜଗତ ସାଇଁ । ୭ ।

—୦—

Digitized by srujanika@gmail.com

## ୧୭- ବଡ ଦେଉଳକୁ ଆଉ ନଯିବ ତୋର

ବଡ ଦେଉଳକୁ ଆଉ ନଯିବି ତୋର
କଳାଆର ଭୁଜ ହେ ବ୍ରହ୍ମାଣ୍ଡ ଠାକୁର
ପଣ୍ଡା ପଡ଼ିଆରୀଙ୍କର ଜୁଲମକୁ ମୋର ଡର
ତେଣୁ ବଡଦାଣ୍ଡେ ଥାଇ କରେ ଜୁହାର—
ତେଣୁ ସିଂହଦ୍ୱାରେ ରହି କରେ ଜୁହାର । (ଘୋଷା)
ଧନ ରତନ ମୋ ଧାଏ ତୋ ପାଦ କି ଆଉ ଛୁଏଁ ?
ଦେବେ ନ ପାରନ୍ତ ଛୁଇଁ ଯେଉଁ ପଯୂର । । ୧ ।
ଋଷି ଯୋଗୀ ଯାହା ଲାଗି, ଯୁଗ ଯୁଗ ଥାନ୍ତି ଜଗି
ମିଳେ କି ସେ ପାଦ ସତେ ଏତେ ସତ୍ୱର ?
ଦାସିଆ ବାଉର ଭାବ, ବୁଝି ଭକତ ବାନ୍ଧବ
ଯେନଥିଲୁ ତା ନୈବେଦ୍ୟ ବତାଇ କର । । ୩ ।
ଲକ୍ଷେ ଯୋଜନରୁ ପୁଣି, ମୃଗୁଣି ଗୁହାରି ଶୁଣି
ମରଣ ମୁଖରୁ କରିଥିଲୁ ଉଦ୍ଧାର । । ୪ ।
ସାମ୍ୟ, ମୈତ୍ରୀ, ଦୟାଭାବ ତୋଠାରେ ଠାକ ମାଧବ
ନ ପାଏ ତୋ ହୃଦେ ସ୍ଥାନ ଭେଦ ବିଚାର । । ୫ ।
ଛତନ ପଙ୍‌କ୍ତି ଖାଇ, ଜାତି ତୋ ପୁରରେ ନାହିଁ
ଭକତ ଫଳ ପୁଷ୍ପରେ ଶରଧା ତୋର । । ୬ ।
ଭୋଗରାଗ ନାନା ଜାତି, ଭୋଜନେ ନାହିଁ ମୋ ମତି
କଣାଏ ମାତ୍ର କୈବଲ୍ୟ ମୋତେ ଅମୃତ । । ୭ ।
ମେଘନାଦ ତୋ ପ୍ରାଚୀର, ବେଶ ତୋ ବଡ଼ ଶୃଙ୍ଗାର
ପତିତପାବନ ବାନା ଅଟେ ତୋହର । । ୮ ।
କାଇଶ ପାବଚ୍ଛେ ତୋର, ପିଣ୍ଡ ଦାନ କଲେ ନର
ପିତୃ ଲୋକ ପାଇ ତାହା ହୁଅନ୍ତି ବର । । ୯ ।
ତୁ ଯେବେ ଜଗତ ନାଥ, ମୁଁ ଯେବେ ତୋର ଭକତ
ମରଣେ ନେବେ ଦର୍ଶନ ଦେବୁ ହେ ମୋର । । ୧୦ ।

—୦—

Digitized by srujanika@gmail.com

# ୧୮- ସ୍ନାନ ପୂର୍ଣ୍ଣିମାରେ ସ୍ନାନ ବେଦୀ ପରେ

ସ୍ନାନ ପୂର୍ଣ୍ଣିମାରେ ସ୍ନାନ ବେଦୀପରେ ସ୍ନାନ ସାରି ବେଶ ହୋଇ
ସ୍ୱର୍ଣ୍ଣ କୂପ ଜଳେ ସ୍ନାନ ଆଚରଣ ଜ୍ୱର ଭୋଗିଲ କିମ୍ପାଇ ? (ଘୋଷା)

ଗଜାନନ ବେଶ ତେଜ ଜଗନ୍ନାଥ ଅଣସର ଘରେ ଯାଇ
ଦ୍ରବ୍ୟଶାଳୀ ଭୋଗ କରି ପରିତ୍ୟାଗ ରହିବ ପାଚନ ଖାଇ । ୧ ।

ଦେବତା ହୋଇଣ ଭୋଗିଲେ କଷଣ କାହାକୁ କହିବା ଯାଇ
ଯାହାକୁ କହିଲେ ଶୁଣନ୍ତା ସେ ଦୁଃଖ ସେ ନିଜେ ଦୁଃଖ ଭୋଗଇ । ୨ ।

ଅନବସରରେ ରହିବ ଯାଇଣ ରୋଗରୁ ମୁକତି ପାଇଁ
ତୁମ୍ଭ ଦରଶନ ଆଶାରୁ ବଞ୍ଚିତ ଭକ୍ତ ଜନେ ହୋଇବଇଁ । ୩ ।

ପଞ୍ଚା ପରେ ନଞ୍ଚା ତା ପରେ ଗୁଣ୍ଡିଚ୍ଚ ଯାତ୍ରାରେ ବାହାର ହୋଇ
ବଡ଼ ଦାଣ୍ଡେ ଯାତ୍ରା କରିବ ରଥରେ ପତିତ ଉଦ୍ଧାର ପାଇଁ । ୪ ।

ରତ୍ନ ସିଂହାସନ କରିଦେଇ ଶୂନ୍ୟ ଯିବ ହେ ପ୍ରଭୁ ପଳାଇ
ଜନ୍ମ ବେଦୀକାରେ ରହିବ ଦୁଃଖରେ ଲକ୍ଷ୍ମୀ ଦେବା ପଡ଼ ଖାଇ । ୫ ।

ମହାଲକ୍ଷ୍ମୀଙ୍କର କର କଇବଲ୍ୟ ଭକ୍ତଙ୍କୁ ମିଳିବ ନାହିଁ
ଲକ୍ଷ୍ମୀ ଦ୍ରୋହୀ ହୋଇ ରହିବ ହେ ପ୍ରଭୁ ନାନା ନିର୍ଯ୍ୟାତନା ସହି ୬ ।

ନବ ଦିନ ପରେ ଯେବେ ଶ୍ରୀମନ୍ଦିରେ ବାହୁଡ଼ିବ ଖୁସି ହୋଇ
ଲକ୍ଷ୍ମୀ ଠାକୁରାଣୀ ଓଗାଳିବେ ବାଟ ମନ୍ଦିରେ ପ୍ରବେଶ ପାଇଁ । ୭ ।

ଅଭିମାନ ଭରା ଦାମ୍ପତ୍ୟ କଳହ ଯିବ କ୍ଷଣେ ପାଣି ହୋଇ
ଶେଷେ ପ୍ରବେଶିବ ଶ୍ରୀମନ୍ଦିରେ ପ୍ରଭୁ ଘୋଷ ଯାତ୍ରା ସାରିଦେଇ । ୮ ।

ହରିବୋଲ ହୁଳହୁଳି ଶବଦରେ ଦଶଦିଗ କମ୍ପିବଇଁ
ଲୀଳା ଲଗାଇଛ ନୀଳାଚଳେ ବସି ନୀଳମାଧବ ଗୋସାଇଁ । ୮ ।

—o—

Digitized by srujanika@gmail.com

## ୧୯- ରଥ ହେଲାଣି ସଜ

ରଥ ହେଲାଣି ସଜ,
ପହଣ୍ଡି ହୋଇଣ ବେଗେ ବିଜେକର,
ଆହେ ବଳଆର ଭୁଜ । (ଘୋଷା)

ଡ଼ାକନ୍ତି ଭକତେ ଦର୍ଶନ ନିମନ୍ତେ ରୁଣ୍ଡି ହୋଇ ଶତ ଶତ
ସିଂହ ଦ୍ୱାରେ ଉଭା ହୋଇଣ କେଡ଼େ ଶୋଭା ତିନି ଠାକୁରଙ୍କ ରଥ
ସଜ ହୋଇଅଛି 'ନନ୍ଦିଘୋଷ' 'ଦେବଦଳନ' ସେ 'ତାଳଧ୍ୱଜ' । ୧ ।

ମସ୍ତକେ ଟାହିଆ ପାଉଥିବ ଶୋଭା ଆହା କେଡ଼େ ମନୋହର
ହଲି ହଲି ଝୁଲି ଝୁଲି ଆସୁଥିଲେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର
ଦଇତା ପତିଏ କରୁଥିବେ ସେବା ଶ୍ରୀଚରଣ ଦେବରାଜ । ୨ ।

ବାଜୁଥିବ ତୁରୀ, ଘଣ୍ଟଘଣ୍ଟା ଭେରୀ ଆସିବେ ପାଲିଙ୍କି ଚଢ଼ି
ଉତ୍କଳର ଗଜପତି ମହାରାଜା, ମସ୍ତକେ ମୁକୁଟ ଭିଡ଼ି
ଚଣ୍ଡାଳ ସମାନ କରିବେ ସେ ଛେରା-ପହରା ଶ୍ରୀପଦ ରଜା । ୩ ।

ଆଗେ ଗଲୁଥିବେ ପ୍ରଭୁ ବଳଭଦ୍ର ବଡ଼ଭାଇ ତାଳଧ୍ୱଜେ
ମଝିରେ ଗଲିବେ ସୁଭଦ୍ରା ହୋଇଣ ଦେବଦଳନରେ ବିଜେ
ନନ୍ଦିଘୋଷେ ଚଢ଼ି ଶେଷେ ଗଲୁଥିବେ ଚକାଡ଼ୋଳା ଟେକି ଭୁଜ । ୪ ।

ହରିବୋଲ ହୁଳହୁଳି ଶବଦରେ କମ୍ପୁଥିବ ତିନିପୁର
ପତିତପାବନ ବାନା ରଥଚୂଳେ ଉଡୁଥିବ ଫରଫର
ତୁମ୍ଭ ଦରଶନ କଲେ ରଥେ ଜନ ମୁକତି ହୁଏ ସହଜ । ୫ ।

—o—

Digitized by srujanika@gmail.com

## ୨୦- ବାଧୁଥିବ କେତେ ଶ୍ରୀଅଙ୍ଗକୁ ପ୍ରଭୁ

ବାଧୁଥିବ କେତେ ଶ୍ରୀଅଙ୍ଗକୁ ପ୍ରଭୁ, ରଥେ ପହଣ୍ଡି ବେଳକୁ
ସବୁ ସୁଖ ଏଡ଼ି ଶ୍ରୀମନ୍ଦିର ଛାଡ଼ି, ବଜେଟି ବଡ଼ ଦାଣ୍ଡକୁ । (ଘୋଷା)

ଅନବସରରେ ରହି ଏକ ପକ୍ଷ ନ ଦେଲ ଦେଖା ଭକ୍ତଙ୍କୁ
ଦଶମୂଳ ଖାଇ ଆରୋଗ୍ୟ କ ହୋଇ ବଜେ ନବ ଯୌବନକୁ । ।୧।

ଆହା କ ସୁନ୍ଦର ଟାହିଆ ପିନ୍ଧଣ ପକାଅ ପାଦ ଆଗକୁ
ବାଇଶି ପାହାଚୁଁ ଖସି ଖସି ଆସ ହସି ହସି ହେ ତଳକୁ । ।୨।

ବରଷକେ ଥରେ ବସ ହେ ରଥରେ ଯଜ୍ଞ ବେଦୀକୁ ଯିବାକୁ
ଜନମ ମାଟିର ମୋହ ନ ଛାଡ଼ଇ ସତେ କ ପ୍ରଭୁ ତୁମ୍ଭଙ୍କୁ ? ।୩।

ଦଇତା ପତିଏ କେତେ ଦୁଃଖ ଦେଇ ଆଣନ୍ତି ଟାଣି ରଥକୁ
ନ ହସେ ତ ତଳେ ଶ୍ରୀମୁଖ ମଣ୍ଡଳେ ବିଷାଦ ସେତେ ବେଳକୁ । ।୪।

ହଲି ହଲି ପ୍ରଭୁ ଗୃହରେ ହୋଇଲ ଚଢି ରଥ ଉପରକୁ
କୋଟି କୋଟି ନେତ୍ର ହୁଏଟି ପବିତ୍ର ଦେଖି ଦେଖି ସେ ଶୋଭାକୁ । ।୫।

ରଥରେ ତୁମ୍ଭକୁ ଦେଖିଲେ ହେ ପ୍ରଭୁ, ନ ଥାଏ ଡର ଯମକୁ
ଜନ୍ମ ଜନ୍ମାନ୍ତର ପାପ ହୁଏ ଦୂର ସଦୟ ହୁଅ ଯାହାକୁ । ।୬।

ପତିତପାବନ କର ଉଦ୍ଧାରଣ ତୁମ୍ଭେ ପତିତ ଜନଙ୍କୁ
ସେଥିପାଇଁ ପ୍ରଭୁ, ଏ ଦୁଃଖ ଯାତନା ନ ଲାଗେ କ ଶ୍ରୀଅଙ୍ଗକୁ । ।୭।

—o—

Digitized by srujanika@gmail.com

## ୨୧- ବିଶ୍ୱ ବାନ୍ଧବ ହେ ! ହୋଇଲ ଗୁଣ୍ଡିଚା ଘର

ବିଶ୍ୱ ବାନ୍ଧବ ହେ ! ହୋଇଲ ଗୁଣ୍ଡିଚା ଘର
ବଡ଼ଦାଣ୍ଡେ ଆସି, ବାଧା ଲାଗୁଥିବ, ଆଡ଼ପେ ବିଶ୍ରାମ କର । (ଘୋଷା)

ବାଟରେ ଭକତେ ଦେଇଥିବେ କେତେ ଭୋଗ ନଡ଼ିଆ, କଦଳୀ,
ବଧିର ହେଲକି ଶୁଣି ଶୁଣି ତାଙ୍କ ହରିବୋଲ ହୁଳହୁଳି ?
ବରଷକେ ଥରେ ବିଜେ ହୋଇ ରଥେ ବଡ଼ ଦାଣ୍ଡରେ ବିହର । । ୧ ।

'ବାଉଳୀ ଦାସିଆ' ଦେଇଥିଲା ଭୋଗ ଭକତି ପୂର୍ଣ୍ଣ ଚିତ୍ତରେ
ବିଜେ ହୋଇ ରଥେ ତାହାର ହସ୍ତରୁ ଭୋଗ ଖାଇଥିଲ ବାରେ
ବର୍ଣ୍ଣ, ଜାତି, ଭେଦ ନାହିଁ ତୁମ୍ଭଠାରେ ତୁମ୍ଭେ ନାଥ ଜଗତର । । ୨ ।

'ବଳରାମ ଦାସ' ଜଣାଣ ଶୁଣିଣ ଅଟକିଲ ତୁମ୍ଭ ରଥ
ବାଲିରେ ଗଢନ୍ତେ ତିନି ରଥ ସେଥୁ ହେଲ ତହିଁ ଉପସ୍ଥିତ
ବୁଝି ହୁଏ ନାହିଁ କି ବିଚିତ୍ର ଲୀଳା ଅଟେ ଏ ପ୍ରଭୁ ତୁମ୍ଭର । । ୩ ।

'ବନ୍ଧୁ ମହାନ୍ତି'ର ବନ୍ଧୁ ହୋଇଥିଲ ଭକ୍ତ ବନ୍ଧୁ ନାରାୟଣ
ବିପ୍ର ବେଶେ ରତ୍ନ ଥାଳିରେ ପରଶି ଥିଲ ହେ ଅନ୍ନ, ବ୍ୟଞ୍ଜନ
ବନ୍ଧା ରହିଥାଅ ଭକ୍ତ ପାଶେ ସଦା ସେ ତୁମ୍ଭର ତୁମ୍ଭେ ତାର । । ୪ ।

ବିପ୍ର 'ଜଗନ୍ନାଥ ଦାସ' ଭାଗବତ ଲେଖି ଭୋଗୁଥିଲା ଦଣ୍ଡ
ବିକଳେ ଡାକନ୍ତେ କରି ନାଶ ରୂପ ରଖିଥିଲ ତାର ମୁଣ୍ଡ
ବିଜାତି ଯବନ 'ସାଲବେଗ' ହୀନ ହୋଇଛି ଭକ୍ତ ତୁମ୍ଭର । । ୫ ।

—o—

Digitized by srujanika@gmail.com

## ୨୨- ନବକଳେବର ଯାତ୍ରା ସାର

ନବ କଳେ ଯାତ୍ରା ସାର, ସଙ୍ଗ ବେଶ ଗୁଡ଼ ଆସନ୍ତି ଫେରି ହେ
ବଡ଼ ଦାଣ୍ଡେ ରଥେ ବିଜେ କରି ହେ ମହାପ୍ରଭୁ ! । ୧ ।

ହରିବୋଲ ହୁଳହୁଳି, ଏଅନ୍ତ ଭକତ ହୋଇଣ ମେଳି ହେ
ଶିରେ ବୋଳି ବଡ଼ ଦାଣ୍ଡ ଧୂଳି ହେ ମହାପ୍ରଭୁ ! । ୨ ।

ଜାତି, ବର୍ଣ୍ଣ, ଧର୍ମ ଭୁଲି, ସପୁରି, ଶ୍ରୀଫଳ, ଆମ୍ବ କଦଳୀ ହେ
ଭୋଗ ଦେଇ ଜଣାନ୍ତି ଅଳି ହେ ମହାପ୍ରଭୁ ! । ୩ ।

ଚଉଦ ଭକ୍ତ ଉପର, ଟାଣିବା ପାଇଁ କି ସର୍ବେ ଆତୁର ହେ
ହୋଇ ଭକତ ସବେ ବିଭୋର ହେ ମହାପ୍ରଭୁ ! । ୪ ।

ଦେଖି ତୁମ୍ଭର ଶ୍ରୀମୁଖ, ପାଣି ହୋଇଯାଏ ପ୍ରାଣୀଙ୍କ ଦୁଃଖ ହେ
ତହୁଁ ମିଳଇ ସରଗ ସୁଖ ହେ ମହାପ୍ରଭୁ ! । ୫ ।

ଶ୍ରୀଅଙ୍ଗକୁ ବାଧା ଜାଣି ଚୋଡ଼ ପିଠା ଭୋଗ ଲଗାନ୍ତି ଆଣି ହେ
ବାଟେ ମାଉସୀ ମା ଠାକୁରାଣୀ ହେ ମହାପ୍ରଭୁ ! । ୬ ।

ଲକ୍ଷ୍ମୀ ଜଗିଥାନ୍ତି ବାଟ, ରଥେ ତାଙ୍କ ସାଥେ ହୁଏଟି ଭେଟ ହେ
ଶ୍ରୀ ନଅର ହୁଅନ୍ତେ ନିକଟ ହେ ମହାପ୍ରଭୁ ! । ୭ ।

ମହାରାଜା ଗଜପତି ଲକ୍ଷ୍ମୀ ନାରାୟଣ ଭେଟ କରାନ୍ତି ହେ
ମହାରାଣୀ ଲୁଚିଣ ବନ୍ଦାନ୍ତି ହେ ମହାପ୍ରଭୁ । । ୮ ।

ସିଂହଦ୍ୱାରେ ହୁଅ ଉଭା, ଆହା କି ସୁନ୍ଦର ଅଟେ ସେ ଶୋଭା ହେ
ଦଶେ ଯାହା ଅତି ମନଲୋଭା ହେ ମହାପ୍ରଭୁ ! । ୯ ।

Digitized by srujanika@gmail.com

ରଥେ ହୁଏ ସୁନା ବେଶ, ଯାହା ଦେଖି ନର ଦେବତା ତୋଷ ହେ
ମନୁଁ ହୁଅଇ କଳୁଷ ନାଶ ହେ ମହାପ୍ରଭୁ ! ।୧୦।

ଅଧର ପଣା ପାନରେ, ରଥଯାତ୍ରା ସରେ ଶୁଭ ଦିନରେ ହେ
ଯାତ୍ରା ଶେଷେ ଯାଅ ଶ୍ରୀମନ୍ଦିରେ ହେ ମହାପ୍ରଭୁ ! ।୧୧।

ଲକ୍ଷ୍ମୀ ଆରମ୍ଭନ୍ତି କଳି, ଈଭିମାନେ ଦ୍ୱାର ଦିଅନ୍ତି କଳି ହେ
କର ତାଙ୍କ ପାଶେ କେତେ ଅଳି ହେ ମହାପ୍ରଭୁ ! ।୧୨।

ଦାମ୍ପତ୍ୟ କଳହ ପରି, ମୁହୂର୍ତ୍ତେ ସମାପ୍ତି ହୁଏ ତାହାରି ହେ
ଶେଷେ ଦିଅନ୍ତି ଦୁଆର ଖୋଲି ହେ ମହାପ୍ରଭୁ ! ।୧୩।

ଶ୍ରୀମନ୍ଦିର ଖାଲି ଖାଲି, ଲାଗୁଥାଏ ତୁମ୍ଭେ ନ ଥାଅ ବୋଲି ହେ
କୃଷ୍ଣ ବିନୁଁ ଗୋପପୁର ଭଳି ହେ ମହାପ୍ରଭୁ ! ।୧୪।

ଲାଗେ ଗହଳି ଚହଳି, ଆନନ୍ଦ ବଜାର ପଡ଼େ ଉଛୁଳି ହେ
ମହା ପ୍ରସାଦ ଭଳିକି ଭଳି ହେ ମହାପ୍ରଭୁ ! ।୧୫।

ରତ୍ନ ସିଂହାସନେ ବସ, ନିତି ନିତି ହୁଅ ନାନାଦି ବେଶ ହେ
ଯାହା ଦେଖିବାକୁ ସଦା ଆଶ ହେ ମହାପ୍ରଭୁ ! ।୧୬।

—୦—

Digitized by srujanika@gmail.com

## ୨୩- ତୁମ୍ଭ ଲୀଳା ସବୁ ଦେଖିବାକୁ ପ୍ରଭୁ

ତୁମ୍ଭ ଲୀଳା ସବୁ, ଦେଖିବାକୁ ପ୍ରଭୁ, ମନ ଭାବୁ ଭାବୁ ଦିନ ଯାଏ ସରି,
ଦେଖି କେଉଁ ଦୋଷ ବନ୍ଧିଲ ହେ ରୋଷ, କହ ଜଗନ୍ନାଥ କପଟ ନ କରି ।
(ଘୋଷା)

ସ୍ନାନ ପୂର୍ଣ୍ଣିମାରେ, ସ୍ନାନ ମଣ୍ଡପରେ, ଗଣେଶ ବେଶରେ ଦେଖି ହେଲି ତୋଷ,
ବାମନ ବେଶରେ ଦେଖିଲି ରଥରେ, ଗୁଣ୍ଡିଚା ଯାତ୍ରାରେ ହେ କମଳା ଈଶ,
ଯଜ୍ଞ ମଣ୍ଡପରେ, ଗୁଣ୍ଡିଚା ମନ୍ଦିରେ, ଭକତ ଅନ୍ତରେ ଦରଶନ କରି,
ଶରଧା ବାଲିରେ, ବୁଲିଲି ମଜାରେ, ଭକ୍ତ ଆନନ୍ଦରେ ମୁଖେ ରାମହରି । ୧ ।

ତୁମ୍ଭ ଭୋଗ ସବୁ, ଚାଖିବାକୁ ପ୍ରଭୁ, ଚିତ୍ତେ ଭାବୁ ଭାବୁ ଭାଗ୍ୟେ ନ ଜୁଟିଲା,
ନବ କଳେବର ଦର୍ଶନେ ତୁମ୍ଭର, ମନ ଥିଲା ମୋର ଭାଗ୍ୟେ ନ ଘଟିଲା,
ମଦନ ମୋହନ ବେଶରେ ଆପଣ, ଗୃହପତେ ବସିଣ ଖେଳ ଯେ ଭଉଁରୀ,
ନରେନ୍ଦ୍ର ସରଃରେ ଚନ୍ଦନଯାତ୍ରାରେ କେତେ ମଉଜରେ ମାଳାଦ୍ରି ବିହାରୀ । ୨ ।

ଝୁଲଣ ଯାତ୍ରାରେ ଚନ୍ଦ୍ରା ପୂର୍ଣ୍ଣିମାରେ, ଝୁଲି ହରଷରେ କୃଷ୍ଣ ବେଶ ହୋଇ,
ଆହା କି ସୁନ୍ଦର ତୁମ୍ଭର ହୃଦର, ଦେଖି ମନ ମୋର ହୋଇଯାଏ କାଇ,
ସବୁ ଆଶା ମୋର ପୂର୍ଣ୍ଣ କର, ନ ହୁଅ ନିଷ୍ଠୁର ଘେନ ମୋ ଗୁହାରି,
ଆହେ ଜଗନ୍ନାଥ ମାଗେ ଯୋଡ଼ି ହାତ,
ଫେଡ଼ ମୋ ଆରତ ବାରେ ଦୟା କରି । ୩ ।

—୦—

Digitized by srujanika@gmail.com

# ଅନ୍ୟାନ୍ୟ ଦେବଦେବୀଙ୍କ ଜଣାଣ

## ଶ୍ରୀଗଣପତି ଜଣାଣ

ଆହେ ବିଘ୍ନ ନାଶନ ! ବିନାଶ ବିଶ୍ୱ ଭୀଷଣ,
ବରଷି କରୁଣା ଧାର କର ବିଶ୍ୱ କଲ୍ୟାଣ । (ଘୋଷା)

କୋଟି ସୂର୍ଯ୍ୟ ସମ କାନ୍ତି ଶୈଳ ସୁତା ନନ୍ଦନ,
କରି ମସ୍ତକ କପୋଳେ ଶୋଭେ ଶିତା ଚନ୍ଦନ । ।୧।

ଲମ୍ବୋଦର କି ସୁନ୍ଦର ହେ ଇନ୍ଦୁର ବାହନ,
ଗଣପତି ଗଜାନନ ତ୍ରିଭୁବନ ମୋହନ । ।୨।

ସର୍ବ ଶୁଭ କାର୍ଯ୍ୟାରମ୍ଭେ ବିଘ୍ନରାଜ ବରଣ,
ଚତୁର୍ବର୍ଗ ଫଳ ମିଳେ ପୂଜି ତୁମ୍ଭ ଚରଣ । ।୩।

ଅଶୁଭ ବିନାଶି ବିଶ୍ୱ ଶୁଭ କର ମଣ୍ଡନ,
ମଙ୍ଗଳ ବିତରି ଅମଙ୍ଗଳ କର ଖଣ୍ଡନ । ।୪।

ମୂର୍ଖ ହୁଏ ମହାଜ୍ଞାନୀ ମୂଢ଼ ହୁଏ ମହାନ,
ପଙ୍ଗୁ ଲଙ୍ଘି ପାରେ ଗିରି ତୁମ୍ଭେ ହେଲେ ପ୍ରସନ୍ନ । ।୫।

ଶ୍ରୀକରେ ଅମୃତ ଲଡ୍ଡୁ କରିଅଛ ଧାରଣ,
କଣାଏ କରୁଣା କର ଘେନା କରି ଜଣାଣ । ।୬।

Digitized by srujanika@gmail.com

## ୨- ଶ୍ରୀସରସ୍ୱତୀ କଲ୍ୟାଣ

ବନ୍ଦେ ମାତ ବୀଣାପାଣି          ବିଦ୍ୟା ବୁଦ୍ଧି ପ୍ରଦାୟିନୀ
ବିଶ୍ୱ ମଙ୍ଗଳ କାରିଣୀ ବିଷ୍ଣୁ ଗୃହିଣୀ,
ସର୍ବ ଅରିଷ୍ଟ ନାଶିନୀ          ବୈକୁଣ୍ଠ ପୁର ବାସିନୀ
ଶୁଭ୍ର ମରାଳ ବାହିନୀ ବିଶ୍ୱ ଜନନୀ,
ଅଜ୍ଞାନ ତିମିର ନାଶିନୀ,
ଅଭୟ ବର ଦାୟିନୀ ମାଗୋ ଭବାନୀ । ।୧।
ଶ୍ୱେତ ପୁଷ୍ପ ସୁଶୋଭିତା          ଶ୍ୱେତ ଚନ୍ଦନ ଚର୍ଚ୍ଚିତା
ଶ୍ୱେତ ଭୂଷଣ ଭୂଷିତା ସର୍ବ ବନ୍ଦିତା,
ମୁରାର ବଲ୍ଲଭ ଦେବୀ          ତୋର ଶ୍ରୀଚରଣ ସେବି
ଅଭୟ ଅନନ୍ତ ଲଭି ନର ଦେବତା,
ଅପାର କରୁଣା ତୋହର,
ଅଜ୍ଞାନ ଅନ୍ଧାର ହେଲେ କରଇ ଦୂର । ।୨।
ତୋହର କରୁଣା ଲଭି          ମୂର୍ଖ ହୁଏ ମହା କବି
ଅଜ୍ଞାନ ସାଗର ନର ହୁଅଇ ପାର,
ଭକ୍ତିରେ ଯେ ଡାକେ ତୋତେ          ଶୁଣୁ ତା ଡାକ ତୁରିତେ,
ଫେଡ଼ ଦୁଃଖ କଷ୍ଟ ଯେତେ ଭକ୍ତ ଜନର,
ଶ୍ରୀଫଳରେ ଶ୍ରଦ୍ଧା ତୋର,
ଭକ୍ତିରେ ଅର୍ପଣ କଲେ ଦେଉ ମା ବର । ।୩।
କ୍ଷୁଦ୍ର ମତି ଶିଶୁଗଣ          ଅତି ହୀନ ଅକିଞ୍ଚନ,
ନାହିଁ ବିଦ୍ୟା ବୁଦ୍ଧି ଜ୍ଞାନ ଅତି ଅଜ୍ଞାନ,
ନ ଜାଣନ୍ତି ପୂଜା ବିଧି          ଦିଅ ମା ତାହାଙ୍କୁ ବୁଦ୍ଧି
କର ମନୋରଥ ସିଦ୍ଧି ଦୟା ବହ୍ନେ,
ବିଦ୍ୟା ଭଣ୍ଡାର ମା ତୋହର,
ମୁକ୍ତ ହେଉ ତାଙ୍କ ପାଇଁ ଅଷ୍ଟ ପ୍ରହର । ।୪।
ବସନ୍ତର ଆଗମନେ          ବସନ୍ତ ପଞ୍ଚମୀ ଦିନେ
କରନ୍ତି ତୋ ପୂଜା ଜନେ ଆନନ୍ଦ ମନେ,

Digitized by srujanika@gmail.com

ବୀଣା ପୁସ୍ତକ ଧାରିଣୀ                    ଅଛୁ ଶ୍ୱେତ ପଦ୍ମାସିନୀ
ଯେନ ଭକ୍ତ ପୂର୍ଣ୍ଣ ପୂଜା ସଦୟ ପ୍ରାଣେ,
ବାଗ୍‌ଦେବୀ ମା ସରସ୍ୱତୀ,
ଦିଅ ବିଦ୍ୟା ବୁଦ୍ଧି ଜ୍ଞାନ ଯେନା ପ୍ରଣତି ।          । ୫ ।

—o—

## ୩- ଶ୍ରୀବିମଳା ଜଣାଣ

କୃପାମୟୀ ଦେବୀ ବିମଳା,
ନୀଳାଚଳେ ଲଗାଇଛୁ ମା ଲୀଳା ।          (ଘୋଷା)
ଜଗଦମ୍ବା ଜଗତ ଧାରୀ, ଭଗବତୀ ଅଭୟ ଦାୟୀ
ବିପଦ ନାଶିନୀ ସଙ୍କଟ ତାରିଣୀ, ଭବ ସାଗରୁ ଅଛୁ ମା ଭେଳା । ୧ ।
ଶିବା ସତୀ ଦକ୍ଷ ଯଜ୍ଞରେ, ଝାସ ଦେଲେ ପିତୃ ଛଳରେ,
ସତୀଙ୍କ ନାଭିରୁ ହେଲୁ ମା ସମ୍ଭୂତ, ଶ୍ରୀକ୍ଷେତ୍ରେ ବିମଳା ନାମ ହୋଇଲା । ୨ ।
ତୁହି ମା ଜଗତ ଜନନୀ, ନାରାୟଣୀ ବର ଦାୟିନୀ
ନିମିଷକେ ଦୂର ହୁଏ ଦୁଃଖ ଘୋର, ଦେଖିଲା ମାତ୍ରକେ ତୋ କୃପା ଡୋଳା । ୩ ।
ଦାରୁବ୍ରହ୍ମ ଜଗତ ନାଥ, ଅଛୁ ତୁ ମା ଜଗତ ମାତ
ଭୈରବ,ଭୈରବୀ ରୂପେ ପୂଜା ପାଅ ଜନେ ଯା ଦେଖି ହୁଅନ୍ତି ବାଉଳା । ୪ ।
ଶ୍ରୀ ଜଗନ୍ନାଥଙ୍କ ନୈବେଦ୍ୟ, ସମର୍ପଣ ହୁଏ ତୋ ପାଦ
ମା' ଦୃଷ୍ଟି ପଡ଼ି ପବିତ୍ର ହୁଅନ୍ତେ ମହା ପ୍ରସାଦ ତା ନାମ ହୋଇଲା । ୫ ।
ଆଦ୍ୟାଶକ୍ତି ତନ୍ତ୍ର ମତରେ, ବିଦିତ ତୁ ଏ ଜଗତରେ
ଶକ୍ତି ପୀଠ ରୂପେ ଗଣନ୍ତି ଶ୍ରୀକ୍ଷେତ୍ର ଯୁଗ ଯୁଗ ଧରି ନାମ କହିଲା । ୬ ।
ଉଗ୍ରତାରା, ସିଂହ ବାହିନୀ, ମାତଙ୍ଗିନୀ, ଚଣ୍ଡୀ, ମୋହିନୀ
ଯେଉଁ ନାମ ଧରି ଯେ ଡାକନ୍ତି ତୋତେ ସେ ନାମ ଜଗତେ ବିଦିତ ହେଲା ।୭।
ବହୁ ଦେବଦେବୀଙ୍କ ମେଳେ, ବିଜେ ହୋଇଛୁ ନୀଳାଚଳେ
ପୂଜା ଉପଚାର ନାନାଦି ତୋହର ଦେଖିବାକୁ ସଦା ମନ ରହିଲା । ୮ ।

—o—

(ପୁରୀର ଶ୍ରୀମନ୍ଦିର ବେଢ଼ାରେ ପ୍ରତିଷ୍ଠିତ ପ୍ରସିଦ୍ଧ ବିମଳା ଠାକୁରାଣୀ)

Digitized by srujanika@gmail.com

## ୪- ଶ୍ରୀ ମଙ୍ଗଳା ଜଣାଣ

ଜୟ ତୁ ମହା ମଙ୍ଗଳା ସର୍ବ ମଙ୍ଗଳ କାରିଣୀ
ଘଣ୍ଟ ଘୋଡାଇ ମରଣ ମୁଖରୁ ରଖୁ ତାରିଣୀ । (ଘୋଷା)
'ଚଅପୋଇ' ଲୋକ କଥା ହୋଇକି ପାରଇ ମିଥ୍ୟା ?
ମହା ବିପଦୁଁ ତାହାକୁ ରଖିଲ ତା ଡାକ ଶୁଣି । ।୧।
ବଣିକ 'ଦଧିବାମନ', କଲ୍ଲ ତୋତେ ସ୍ଥାପନ
ପାଷାଣ ପଦ୍ମ ଆସନେ ସିଂହଳ ଦ୍ୱୀପରୁ ଆଣି । ।୨।
ପ୍ରାଚୀ ତଟେ ବାସ ତୋ, ପୀଠ ତୋ କାକଟପୁର
ଖଣ୍ଡା ଖର୍ପର ଧାରିଣୀ ଅଟୁ ମା ସିଂହବାହିନୀ । ।୩।
ଭକ୍ତ 'ସାଲବେଗ' ହୀନ, ଜାତିରେ ଅଟେ ଯବନ
କଲା ତୋ ପାଦେ ଜଣାଣ ଭେଟିବାକୁ ଚକ୍ରପାଣି । ।୪।
ତୋହର ଆଦେଶ ବଳେ, ମହାବାହୁ ଦାରୁ ମିଳେ
ନବ କଳେବର ଲାଗି ଯାଆନ୍ତି ଦୟିତା ଆଣି । ।୫।
ବସନ୍ତ ଚୈତ୍ର ମାସରେ, ପ୍ରତ୍ୟେକ ମଙ୍ଗଳବାରେ
ପାଳନ୍ତି ହୁଏ ପ୍ରସିଦ୍ଧ ଝାମୁ ଯାତ୍ରା ତୋର ପୁଣି । ।୬।
ଶରଦେ ଆଶ୍ୱିନ ମାସେ, ମହାଷ୍ଟମୀ ଯେବେ ଆସେ
ମହିଷାସୁର ବିନାଶୁ ହୋଇ ମହିଷାମର୍ଦ୍ଦିନୀ । ।୭।
ଶିଶୁ ଖେଳନ୍ତି ଖେଳରେ, ଶାନ୍ତି ନ ଆସେ ହୃଦରେ
ଗଜାମଣ୍ଡା ଖଞ୍ଜେ ପଣ୍ଡା ଚର୍ଚ୍ଚି ତୋ ଶରଧା ଜାଣି । ।୮।
ଗୋପ ଲକ୍ଷ୍ମୀ ଧନ ଜନ, ଭକତେ କରୁ ପ୍ରଦାନ
ଶରଣାଗତେ ଅଭୟ ଦେଉ ଅଭୟ ଦାୟିନୀ । ।୯।
ବିଶ୍ୱୋଟକ ମହାମାରୀ, ନ ଆସନ୍ତି ତୋତେ ଡରି
ବିପଦ ସାଗର ପାରି କର ମାତ କାତ୍ୟାୟିନୀ । ।୧୦।
ତୋହର କରୁଣା ବିନା, ନ ମିଳଇ ଦାନା କଣା
ସରବେ ତୋ ସୁତ ସୁତା ନମସ୍ତେ ବିଶ୍ୱ ଜନନୀ । ।୧୧।

—୦—

(ପୁରୀ ଜିଲ୍ଲା କାକଟପୁର ଅଧିଷ୍ଠାତ୍ରୀ ପ୍ରସିଦ୍ଧ ମଙ୍ଗଳା ଠାକୁରାଣୀ)

Digitized by srujanika@gmail.com

## ୫- ଶ୍ରୀଲୋକନାଥ ଜଣାଣ

ପ୍ରଭୁ ଲୋକନାଥ ! ତୁମ୍ଭେ ସବୁ ଲୋକଙ୍କର ନାଥ
ଏହା ଯେବେ ସତ, କାହିଁକି କହତ ଶରଣାଗତେ କର ଅନାଥ । (ଘୋଷା)

ତୁମ୍ଭେ ଶିବଶମ୍ଭୁ ପଶୁପତି, ଚନ୍ଦ୍ରଶେଖର ପାର୍ବତୀ ପତି,
ତୁମ୍ଭେ ପଞ୍ଚାନନ, ବିପଦ ଭଞ୍ଜନ, ତୁମ୍ଭେ ମୃତ୍ୟୁଞ୍ଜୟ ବିଶ୍ୱନାଥ । ୧ ।

ତପେ ଦିଅ ବର କୋପେ ବର ଦିଅ ଆହେ ଭୋଳା ମହେଶ୍ୱର
ଭୋଳା ମନ ଯେବେ ଭଜଯାଏ କେବେ, ତାଣ୍ଡବ ନୃତ୍ୟରେ ହୁଅ ରତ । ୨ ।

ବନବାସ କାଳେ ସୀତା ପତି, ଲଉ ରୂପେ ପୂଜେ ତୁମ୍ଭ ମୂର୍ତ୍ତି
ତୁମ୍ଭ କୃପା ବଳେ, ବିପଦୁଁ ତରିଲେ ପୂର୍ଣ୍ଣ ହେଲା ତାଙ୍କ ମନୋରଥ । ୩ ।

ତୁମ୍ଭର ଯେ ଅଟେ ଧୂଳି ଖେଳ, ଜଗତର ତାହା ଅଟେ କାଳ,
ତୁମ୍ଭେ ହେଲେ ରୋଷ ସୃଷ୍ଟି ହୁଏ ଧ୍ୱଂସ, ପ୍ରଳୟ ଲୀଳାରେ ବଳେ ଚିତ୍ତ । ୪ ।

ରତ୍ନ ଭଣ୍ଡାର ରକ୍ଷକ ତୁମ୍ଭେ, ପୂଜା ପାଅ ମାଳାତିଳ ଧାମେ
ଅସାଧ୍ୟ ବ୍ୟାଧିରୁ ଲୋକଙ୍କୁ ଉଦ୍ଧାର, ଯାହାଠାରେ ଯେବେ ହୁଅ ପ୍ରୀତ । ୫ ।

ବର୍ଷକେ ଦର୍ଶନ ଦିଅ ବାରେ, ଫାଲ୍‌ଗୁନ କୃଷ୍ଣ ଏକାଦଶୀରେ
ଜାଗର ରାତିରେ ଉଜାଗର ରହି, ପାଳନ୍ତି ଭକତେ ତୁମ୍ଭ ବ୍ରତ । ୬ ।

ବେଲ ପତ୍ରେ ତୁମ୍ଭ ଶ୍ରଦ୍ଧା ଜାଣି, ଖଞ୍ଜାନ୍ତି ଭକତେ ତାହା ଆଣି
ପାର୍ବତୀ ସାଗର ସରୋବର ନୀର ସ୍ନାନରେ ହୁଅନ୍ତି ଶୁଦ୍ଧ ପୂତ । ୭ ।

ଦୁଃଖ ଜଞ୍ଜାଳରୁ ହୁଏ ମୁକ୍ତ, ତୁମ୍ଭ ମୂର୍ତ୍ତି ଦର୍ଶନରେ ଭକ୍ତ
ଆହେ ମୁକ୍ତିଦାତା ଜଗତ କରତା ତୁମ୍ଭ ପାଦେ ସଦା ଥାଉ ଚିତ୍ତ । ୮ ।

—o—

(ପୁରୀର ପାର୍ଶ୍ୱବର୍ତ୍ତୀ ପ୍ରତିଷ୍ଠିତ ପ୍ରସିଦ୍ଧ ଶିବ ଲିଙ୍ଗ ଶ୍ରୀ ଲୋକନାଥ । ଶ୍ରୀ ରାମଚନ୍ଦ୍ର ବନବାସ ସମୟରେ ଏହାଙ୍କୁ ନ ପାଇ ଲାଉ ରୂପରେ ପୂଜା କରିଥିବାରୁ ଏହାଙ୍କର ନାମ ଲାଉକନାଥ ବା ଲୋକନାଥ ହୋଇଥିବାର ପ୍ରବାଦ ଅଛି । )

Digitized by srujanika@gmail.com

## ୭- ଶ୍ରୀବଳଦେବ ଜଣାଣ

ବଳଦେବ ବଡ଼ ଠାକୁର, ବନ୍ଦନ୍ତ ପୟରେ ଦେବ କିନ୍ନର
ବଧ କରି ଦୁଷ୍ଟ କନ୍ଦର୍ପସୁରକୁ କନ୍ଦର୍ପପଡ଼ାରେ କଲ ବିହାର । (ଘୋଷା)

ସିଂହାସନେ ହୋଇଣ ଉଭା, ଦିଶ ପ୍ରଭୁ କି ମନଲୋଭା
ସାନ ଭାଇ ଜଗା ଭଉଣୀ ସୁଭଦ୍ରା ବିଜେ ହୋଇଛନ୍ତି ବାମେ ସୁନ୍ଦର । ୧ ।

ନୀଳାଚଳେ ଶ୍ରୀଜଗନ୍ନାଥ, ପ୍ରଭୁ ନାମେ ଜଗତେ ଖ୍ୟାତ
ବଡ଼ ଭାଇ ନାମ ନ କରି ନିର୍ଜନ ଆସିଲ କି ଛେଡ଼ି ନୀଳକନ୍ଦର ? । ୨ ।

ଠାକୁରାଣୀ ତୁଳସୀ ଦେବୀ, କି ଉପମା ତାଙ୍କର ଦେବି
ହେଲେ ତାଙ୍କ ଧବ ହଳିଆ ମାଧବ ଲକ୍ଷେ ତୁଳସୀରେ ପୂଜା ପୟର । ୩ ।

ପବିତ୍ର ଏ ତୁଳସୀ କ୍ଷେତ୍ର, ଯା ମହିମା ବଡ଼ ବିଚିତ୍ର
ବଳଆର ଭୁଜ ସେ ବଡ଼ ଠାକୁର ଉପାସକ ହେବେ ଶରଧା ଯାର । ୪ ।

ସୃଷ୍ଟି କର୍ତ୍ତା ଅଟ ଈଶ୍ୱର, କରେ ଶୋଭେ ହଳ ଲଙ୍ଗଳ
ସଞ୍ଜ ସକାଳରେ ତୁମ ଶ୍ରୀପୟରେ ଦୁଃଖ ମୁଁ ଜଣାଏ କରୁଣାକର । ୫ ।

—O—

(କଟକ ଜିଲ୍ଲା କେନ୍ଦ୍ରାପଡ଼ାରେ ପ୍ରତିଷ୍ଠିତ ପ୍ରସିଦ୍ଧ ବଳଦେବଜୀଉ ଠାକୁର)

Digitized by srujanika@gmail.com

## ୭ ଶ୍ରୀଶଙ୍କରେଶ୍ୱର ଜଣାଣ

ଆହେ ପ୍ରଭୁ ଶଙ୍କରେଶ୍ୱର ! ପ୍ରାଚୀ ତଟେ ଶୋଭେ ତୁମ୍ଭ ମନ୍ଦିର
ତୁମ୍ଭର ଉତ୍ପତ୍ତି ତୁମ୍ଭ ଅବସ୍ଥିତି, ରହସ୍ୟ ନ ଜାଣି ପାରନ୍ତି ନର । (ଘୋଷା)

କରଗାର କଅା ବକୁଳ, ଆମ୍ର ପଣସ ନାରିକେଳ—
ଉପବନ ମଧ୍ୟେ ପାତାଳ ଗର୍ଭରୁ, ଜନ୍ମିଲ ବସୁଧା କରି ବିଦାର । ୧ ।

ଶଙ୍କରଙ୍କ ମଧ୍ୟେ ଈଶ୍ୱର, ନାମ ଅଟେ ଶଙ୍କରେଶ୍ୱର
ଯୁଗ ଯୁଗ ଧରି ପୂଜା ପାଉଅଛ, ଇଷ୍ଟ ଦେବ ଅଟ ଭକତଙ୍କର । ୨ ।

ପୁଣ୍ୟତୋୟା ପ୍ରାଚୀ ତଟରେ, ଶମ୍ଭୁ ଦରଶନ ଯେ କରେ
ଜନ୍ମ ଜନ୍ମାନ୍ତର ପାପ ହୁଏ ଦୂର, ଯମ ଯନ୍ତ୍ରଣାକୁ ନ ଥାଏ ଡର । ୩ ।

କୋଣାର୍କ ଅର୍କ ମନ୍ଦିର, ଅଦୂରରେ ଅଟେ ତୁମ୍ଭର
ଅନ୍ୟ ଦିଗେ ମା 'ମଙ୍ଗଳା'ଙ୍କ ମନ୍ଦିର ପ୍ରାଚୀନତଟ ପୀଠ କାକଟପୁର । ୪ ।

ବସିଣ ବୃଷଭ ବାହାନେ, ଭ୍ରମ କରିଥ ତ୍ରିଭୁବନେ
ଦେବୀ ମା ପାର୍ବତୀ ସଙ୍ଗରେ ଥାଆନ୍ତି, ଦିଅନ୍ତି ଯେ ଯାହା ମାଗଇ ବର । ୫ ।

ଗୁହାରିଆ ତୁମ୍ଭ ପଦ୍ମରେ, ଯେ ପଡ଼ଇ ଉପବାସରେ
ତା ଗୁହାରି ଶୁଣ ହର ତା କଷଣ, ଭବକୁ ପାଶ ଅଭାବକୁ ଦୂର । ୬ ।

ତୁମ୍ଭ ନାମ ଜପିଲେ ମୁଖେ, ଭୂତ ପ୍ରେତ ନ ଯାନ୍ତି ପାଖେ
ଗ୍ରହ ଦୋଷାଦୋଷ ହୁଅଇ ବିନାଶ, ଯାହାଠାରେ ତୁମ୍ଭେ କରୁଣା କର । ୭ ।

ତୁମ୍ଭ ପ୍ରସାଦରୁ ଜଣାଏ, ପାଇ ପ୍ରାଣ ନିର୍ଭୟ ହୁଏ
ଲକ୍ଷ୍ମଣୀ ନବୀନ, ମାଜଣାରେ ଚିତ୍ତ, ହୁଏ ଅତି ପ୍ରୀତ ପ୍ରଭୁ ତୁମ୍ଭର । ୮ ।

Digitized by srujanika@gmail.com

ସୁଖେ ଦୁଃଖେ ଯେ ତୁମ୍ଭ ପାଶେ, ସବୁ ଗ୍ଲାନି ଶରଣ ପଶେ
ସେ ତୁମ୍ଭ ଭକତ ତୁମ୍ଭେ ତାର ନାଥ, ଶଙ୍କଟକୁ ଟଳେ ନ ଥାଏ ଡର । ୯ ।

ଯେ ସାମାନ୍ୟ ପତ୍ର ପୁଷ୍ପରେ, କରେ ପୂଜା ଭକତି ଭରେ
ତହିଁରେ ବିଶେଷ ହୁଅ ହେ ସନ୍ତୋଷ, ନ ଥାଏଟି ଆନ ଆଶା କାହିଁର । ୧୦ ।

ଆହେ ପ୍ରଭୁ ପାର୍ବତୀ ପତି, ଘେନ ଭକ୍ତି-ପୂର୍ଣ୍ଣ ପ୍ରଣତି
ତୁମ୍ଭ ଶ୍ରୀପଦ୍ମରେ ଆଶ୍ରା ଦିଅ ମୋତେ, ସଂସାର ସାଗରୁ ଉଦ୍ଧାର କର । ୧୧ ।



(ପୁରୀ ଜିଲ୍ଲା କାକଟପୁର ଥାନା ଅନ୍ତର୍ଗତ ପ୍ରାଚୀ ତଟରେ ପ୍ରତିଷ୍ଠିତ ଏକ ପ୍ରାଚୀନ ଓ ମହାନ ଶିବ ଲିଙ୍ଗ ଶ୍ରୀ ଶଙ୍କରେଶ୍ୱର)

Digitized by srujanika@gmail.com

# ଭଜନ ବିଭାଗ

## ମନ ବାଇଆରେ ଶୁଣ ଏହା ମନ ଦେଇ

ମନ ବାଇଆରେ, ଶୁଣ ଏହା ମନ ଦେଇ
ଆଖି ଥାଉଁ ଥାଉଁ ଅନ୍ଧ ତୁ ହୁଅନା
କହୁଛୁ ତୋତେ ବୁଝାଇ । (ଘୋଷା)

ଆକାଶ ଯେଉଁଠି ଧରାକୁ ଛୁଇଁଛି ଦିଗ୍‌ବଳୟ ତାକୁ କହି
ନଦୀ ସ୍ରୋତ ଯହିଁ ସାଗରେ ମିଶଇ ସଙ୍ଗମ ସ୍ଥଳଟି ସେହି । ୧ ।

ପ୍ରକୃତି ପୁରୁଷ ମିଳନ ଯେଉଁଠି ସୃଷ୍ଟିର ଉତ୍ପତ୍ତି ତହିଁ
ଆତ୍ମା-ପରମାତ୍ମା ମିଳନ ହୋଇଲେ ସଂସାରୁ ମୁକ୍ତି ମିଳଇ । ୨ ।
ପତି-ପତ୍ନୀଙ୍କର ମନ ମିଳନରେ ସ୍ୱର୍ଗ ସୁଖ ମର୍ତ୍ତ୍ୟେ ମିଳେ
ମନ ସଙ୍ଗେ ମନ ମିଳନ ହୋଇଲେ ବନ୍ଧୁତାରୁ ମଧୁ ଝରେ । ୩ ।

ସତ୍ୟ, ଅହିଂସାର ମିଳନ ତଳରେ ସବୁ ମିଳେ ମର୍ତ୍ତ୍ୟ ତଳେ
ଧୈର୍ଯ୍ୟ, ସହିଷ୍ଣୁତା ମିଳନେ ଅସାଧ୍ୟ ସାଧ୍ୟ ହୁଏ କାଳେ କାଳେ । ୪ ।

ଦୟା, କ୍ଷମା, ସ୍ନେହ, ମିଳନ ହୋଇଲେ ଦାନବ ଦେବତା ହୁଏ
କାମ, କ୍ରୋଧ, ମୋହ ମିଳନ ହୋଇଲେ ମନୁଷ୍ୟତ୍ୱ ଲୋପ ପାଏ । ୫ ।

ମେଘ ସଙ୍ଗେ ମେଘ ମିଳନ ହୋଇଲେ ବିଜୁଳି ଆକାଶେ ଖେଳେ
ଭକତି ସହିତ ବିଶ୍ୱାସ ମିଶିଲେ ଈଶ୍ୱର ମିଳନ୍ତି ହେଳେ । ୬ ।

—o—

Digitized by srujanika@gmail.com

## ୭- ସଜ କରୁ କରୁ ସୁନା ପଞ୍ଜୁରୀକୁ

ସଜ କରୁ କରୁ ସୁନା ପଞ୍ଜୁରିକୁ ଉଡ଼ି ଗଲାଗଲା ଶାରୀ
ଉଡ଼ିଲା ବେଳକେ ଯେତେ ଯେ ଡାକିଲେ ନ ଆସଇ ଆଉ ଫେରି ଲୋ
ନ ଆସଇ ଆଉ ଫେରି । (ଘୋଷା)

କରିବୁ ବୋଲି ତୁ ତାକୁ ଆପଣାର
ଭାବୁ ଭାବୁ ବିତିଗଲା କାଳ ତୋର
ହେଳା କଲେ ହେଳା, ବୁଝେ ଜାଣୁ ଜାଣୁ ରହିଲୁ ଅଜଣା ପରିଲୋ । ୧ ।

ଘର ବାନ୍ଧି ବାନ୍ଧି ନିଲାମ ହୋଇଲା
ମୁଲକ ମାହାଲ ଯାହା ତୋର ଥିଲା
କାଳିକୁ ରଖିଲୁ, ଆଜ କାମ ବାକି, ଆଗ ପଛ ନ ବିଚାରିଲୋ । ୨ ।

ଯାହା ସେ ମାଗିଲା ଦେବୁ ଦେବୁ କହି
ନ ଦେଇ ପାରିଲୁ ନିଜ ଦୋଷୁ ତୁହି
ଜାଣି ସେ ପାରିଲା, ତୋ ମନର କଥା, ଗଲା ଉଡ଼ି ଆର ପାରିଲୋ । ୩ ।

ପାରିବୁ ତୁ ଯେବେ ସେ ଶାରୀକୁ ପୋଷି
ପୋଛିଦେ ତୋ ମନୁ ମୋହ ମାୟା ରାଶି
ତା ସେବାରେ ଧ୍ୟାନ, ଦେଲେ ଅନ୍ତରେ ମନ ହେବୁ ଏ ଭବରୁ ପାରିଲୋ । ୪ ।

ସେ ଶାରୀକ ମନ ଭଲ କରି ଚିହ୍ନ
ନାହିଁ ତାର ରୂପ, ରେଖ, ଚିହ୍ନ, ବର୍ଣ୍ଣ
ଶୂନ୍ୟରୁ ସେ ଆସେ, ଶୂନ୍ୟରେ ସେ ମିଶେ, ଏ ଘଟ ତାର ପଞ୍ଜୁରୀ ଲୋ । ୫ ।

—୦—

Digitized by srujanika@gmail.com

## ୩- ଆଉ ନ ଆସେରେ ଥରେ ଯେତ ଗଲେ ଫେରି

ଆଉ ନ ଆସେରେ, ଥରେ ଯେତ ଗଲେ ଫେରି
ଜୀବନ, ଯୌବନ, ଏ ଦୁହିଁଙ୍କୁ ମନ ଦିଅଟି ମନୁ ପାଶୋରି । (ଘୋଷା)

ଆଉ ଜଣେ ଅଛି ଥରେ ଯେ ଆସିଲେ ନ ଯାଏଟି କେବେ ଫେରି
ଜରା ଅଟେ ସେହି, ଆସେ ସିନା ଭାଇ, ଯଉବନ ଗଲେ ସରି । ୧ ।

ଏ ମାୟା ସଂସାର ଅଟଇ ଅସାର, ସବୁ ଧୂଳି ଖେଳ ଭଳି
ଧନ ସୁତା ସୁତ, ନ ଯିବେ ସଙ୍ଗତ, ଯିବୁ ଶେଷେ ଖାଲି ଖାଲି । ୨ ।

ଜୀବନ ହାଟରେ ଯଉବନ ଜରା ଅଟନ୍ତି ଅଦା ବେପାରି
ଜାହାର ମୂଲ ସେ, କରନ୍ତି ବୃଥାରେ, ପଇସା ହାତେ ନ ଧରି । ୩ ।

ଜାଣୁ ଜାଣୁ ମନ, ଅଜଣା ହୁଅନା, ଆପଣାଙ୍କୁ ରଖ ଧରି
ପାଞ୍ଚ ମନ ଆଉ ପଚିଶ ପ୍ରକୃତି ଅଟନ୍ତି ଚୋର ବଇରି । ୪ ।

—O—

Digitized by srujanika@gmail.com

## ୪- ଏ ଘରରୁ ସେ ଘରକୁ କେତେ ଦୂର ବାଟଲୋ

ଏ ଘରରୁ ସେ ଘରକୁ କେତେ ଦୂର ବାଟ ଲୋ
କହିବେ କହିବେ ମିତ ନ କର କପଟ ଲୋ ନ କର କପଟ । (ଘୋଷା)

ଗଢିଛୁ ଏହି ଘରକୁ କେଉଁ କାରିଗରେ
ଯୋଡ଼ିଛୁ କଳ କବଜା କେତେ ପରକାରେ
ଖଞ୍ଜିଛୁ ଜଳା କବାଟି ଯାଉଁଳ କବାଟ ଲୋ । ୧ ।

ଦେଖିଛୁ କି ତା ରୂପକୁ ତୋ ଆଖିରେ ଦିନେ ?
ପଡଇ କି ତାହା କଥା କେବେ ତୋର ମନେ ?
ଭୁଲିଲେ ତାହାକୁ ମନୁ ହେବୁ ଛଟପଟ ଲୋ । ୨ ।

ଖଟାଇଲୁ ଦେଠି ତାକୁ ନ ଦେଇଣ ମୂଲ
ନ ବଗୁରୁ ମନେ ଏହା ମନ୍ଦ କିବା ଭଲ
ସଂସାର ଜଞ୍ଜାଳେ ପଡ଼ି ନ ହୁଅ ଲୁ ଣ୍ଠାଟ ଲୋ । ୩ ।

ଯେ ଗଢ଼ିଛୁ ତୋ ଘଟକୁ ଖଟି ରାତି ଦିନ
ତା ଚରଣେ ଦିନେ ହେଲେ ଦେଲୁ ନାହିଁ ଧ୍ୟାନ
କି ନେଇଯିବୁ ସଙ୍ଗତେ ସରିଲେ ତୋ ହାଟ ଲୋ । ୪ ।

ଆସିଥିଲୁ ଖାଲି ଖାଲି ଯିବୁ ଖାଲି ଖାଲି
ଭୋଗିବୁ ଦୁଃଖ ଯାତନା ପଥ ଗଲେ ଭୁଲି
ବେଳ ଗଡ଼ି ଗଲେ ଆଉ ପାଇବୁକି ଭେଟ ଲୋ-
ପାଇବୁକି ଭେଟ । ୫ ।

—୦—

Digitized by srujanika@gmail.com

## ୪- କ' ଆଉ ଖ' ଦୁଇଗୋଟି ବିନ୍ଦୁ

କ' ଆଉ ଖ', ଦୁଇଗୋଟି ବିନ୍ଦୁ,
ଦୁହିଁଙ୍କୁ ସଂଯୋଗ କର,
ଯେତେ ରେଖା ଟାଣ, ସବୁଠାରୁ ସାନ,
ସରଳ ରେଖାଟି ତାର । (ଘୋଷା)

ସଳଖ ବାଟଟି ସବୁଠୁଁ ନିକଟ, ଅଙ୍କାବଙ୍କା ବାଟ ଦୂର,
ଜ୍ୟାମିତି ଶାସ୍ତ୍ରରେ ଯେପରି ତା ସତ୍ୟ, ନୀତି ଶାସ୍ତ୍ରେ ସେ ପ୍ରକାର । ୧ ।

ଦୁଇ ପ୍ରାଣ ଯେବେ ସରଳ ନ ହୁଏ, ତହିଁରୁ ଝରେ ଗରଳ,
ପ୍ରୀତି ଫାଶ ଟାଣ କରଇଣି ପୁଣ, ମନ ଦେଲେ ନିରମଳ । ୨ ।

ଜଟିଳ ସ୍ୱଭାବ ଜନମାଏ ଦୁଃଖ, ଅଶାନ୍ତିର ବସାଘର
ସରଳ ସ୍ୱଭାବେ ସହଜେ ହୁଅଇ, ମର୍ତ୍ତ୍ୟ ବଇକୁଣ୍ଠ ପୁର । ୩ ।

ସରଳ ପ୍ରକୃତି ପ୍ରାଣକୁ ଛୁଏନ୍ତି ଆପଣା କରଇ ପର,
ସରଳ କଥାଟି ମନକୁ ମାନଇ, ଶ୍ରୁତିକୁ ଲାଗେ ମଧୁର । ୪ ।

ଶାନ୍ତି ଅଟେ ସିନା ସରଗ ସମ୍ପଦ, ଆଉ ସବୁ କଥା ଛାର,
ସରଳ ଜୀବନ କରିଲେ ଯାପନ, ଝରେ ଅମୃତର ଝର । ୫ ।

—୦—

Digitized by srujanika@gmail.com

## ୭- କଳା ମେଘ ସିନା ରୂପେଲ ଜହ୍ନକୁ

କଳା ମେଘ ସିନା ରୂପେଲ ଜହ୍ନକୁ, ଲୁଗୃଏ କ୍ଷଣକ ପାଇଁ
ଜହ୍ନ ରହିଥାଏ ପୂଣି ଶୋଭାପାଏ, ମେଘ ଯେ ଯାଏ ଉଭାଇ ।          (ଘୋଷା)

ଭଲ ଗୁଣ ସିନା ଚନ୍ଦ୍ରମା ସଦୃଶ, ମନ୍ଦ ଗୁଣ ମେଘ ଭଳି
ଯେତେ ଯାହା କଲେ ଭଲଟାକୁ ମନ୍ଦ ନ ପାରେଟି କେବେଁ ଦଳି
ବନସ୍ତେ ଥାଇବ ଫୁଟିଲେ ମାଳତୀ, ବାସ ତାର ମହକଇ । ୧ ।

ଗୋଲପ କଣ୍ଟକ ବୋଲି କାହିଙ୍କ କ ହୁଏ ତାହା ସମତୁଲ ?
ବାଭିନ୍ନ ରଙ୍ଗରେ ରଙ୍ଗିତ କାଚକ, ହୀରା ସଙ୍ଗେ ହୁଏ ମୂଲ ?
ଲକ୍ଷେ ବକ ମଧ୍ୟେ ଥିଲେ ମରାଳଟି, ସହଜେ ଚିହ୍ନା ପଡ଼ଇ । ୨ ।

ଅଗ୍ନି କଣିକାକୁ ଲାଭାଇ ପାରେନା, କେବେଁ ଉଳା କୁତ କୁତ
ରଡ଼ିଏ ସୁନାକୁ ସନ୍ଦେହ ନାହିଁ, ପିତଳ ଯେ ମାଡ ମାଡ
ଯେତେ ଯାହା କଲେ ଭଲ ସଙ୍ଗେ ଭେଲ, କଦାପି ସରି ନୁହଇ । ୩ ।

ପ୍ରକୃତି କେବେଁ ଲୁଚି ନ ରହଇ, ବିକାଶ ଲଭେ ତା କାଳେ
ପାଉଁଶ ଗଦାରେ ଅଗ୍ନିକଣା ଥିଲେ, କୁହୁଳ କୁହୁଳ ଜଳେ
ସତ୍ୟ କାଳେ ପାଏ ଲୋକରେ ପ୍ରକାଶ (ତାକୁ) ମିଥ୍ୟା ନ ପାରେ ଲୁଚାଇ । ୪ ।

—O—

Digitized by srujanika@gmail.com

## ୭- ଆରେ ମନ ଘୃବୁ ଯେବେ ଅଚ୍ଛନ୍ତ ହରି

ଆରେ ମନ ଘୃବୁ ଯେବେ ଅଚ୍ଛନ୍ତ ହରି
କରନା କରନା ପାପ ତାହାଙ୍କୁ ଡ଼ରି । (ଘୋଷା)
ଯାହା ତୁ ମନରେ ଭାବୁ ଜାଣି ପାରନ୍ତ ସେ ସବୁ
ତେଣୁ ନ କର ତୁ ଚିନ୍ତା ମନେ ପରୁ ମନ୍ଦ କଥା
ସେ ତୋ ମନ ଦ୍ୱାରେ ଦଣ୍ଡ ଧରି ପ୍ରହରୀ । ୧ ।
ଚୋର ଏ କର ଯୁଗଳ, କରୁ ବିଶ୍ୱର ମଙ୍ଗଳ
ଚରୁ ପରି ତାପ ସହ, ପର ହିତ କର ଦେହ
ଦିଅନ୍ତ କର୍ମ ଫଳ ସେ ନକାଣ୍ଡ ଧରି । ୨ ।
ନୟନେ ନ ଅନା ବାରେ, ଅସାର ଯାହା ସଂସାରେ
ମନ୍ଦ ଦ୍ରବ୍ୟ ଦେଲେ ଦୃଷ୍ଟି, ମନ୍ଦ ଦିଶିବ ଏ ସୃଷ୍ଟି
ହଂସ ପରି କ୍ଷୀର ପିଇ ବରଜ ବାରି । ୩ ।
କୁ'କଥା କାନେ ନ ଶୁଣ, ଦିଏ ତା ଘୋର କଷଣ
ବିପଥକୁ ନିଏ ଟାଣି, ରାଗ ଦ୍ୱେଷ ଦିଏ ଆଣି
ନ ପୂରି ତାହାକୁ ପାଖେ ସେ ଚୋର ଅରି । ୪ ।
କୁ' ବାକ୍ୟ ମୁଖେ ନ ଭାଷ, ସେତ ହଳାହଳ ବିଷ
ଜନମାଏ ନାନା କ୍ଲେଶ, ଅମିତତା, ହିଂସା, ଦ୍ୱେଷ
ହରି ନାମ ଭଜ ଭବୁ ହୁଅରେ ପାରି । ୫ ।
ମିଥ୍ୟା ଅଟେ ମହା ପାପ, ଯେହ୍ନେ ବିଷଧର ସର୍ପ
ତାହାଠାରୁ ଦୂରେ ରହ, ଦୂର କର ମାୟା ମୋହ
ଜାଣନ୍ତ ଶୁଣନ୍ତ ସବୁ ବିଶ୍ୱ ବିହାରୀ । ୬ ।
ସେ ପାଦେ ରଖିଲେ ଲୟ, ନ ରହେଟି ଡ଼ର ଭୟ
କରନ୍ତ ଅଭୟ ଦାନ, ଅସାଧ୍ୟ ହୁଏ ସାଧନ
ଭକ୍ତରେ ଡାକିଲେ ଶୁଣନ୍ତ ସେ ଗୁହାରି । ୭ ।

—o

Digitized by srujanika@gmail.com

## ୮- ଘୁମ୍ ଘୁମ୍ ଘୁମ୍‌ରେ ପାରା

ଘୁମ୍ ଘୁମ୍ ଘୁମ୍‌ରେ ପାରା
ଉଡ଼ିଗଲେ ଆଉ ନ ଦେଉ ଧରା । (ଘୋଷା)

କେଉଁ ମୁଲକରେ ଅଛି ତୋ ଘର ?
ଉଡ଼ି ଯାଉ ଗୁଡ଼ି ଢାଡ଼ି ତୋହର
ସୋରଷ ମାଣ୍ଡିଆ ଖାଉ ତୁ କେତେ
ଡମ୍ବ ପାର ଛୁଆ ଫୁଟାଉ ଯେତେ
ସବୁ ଛାଡ଼ି ଶେଷେ ଯାଉ ତୁ ପରା । ୧ ।

ଅଣ ନେଉଛି ତୋ ରୁକୁଣା ରଥ
ନଜେ ବାଛୁ ନଜ ଯିବାର ପଥ
ଶୂନ୍ୟରୁ ତୁ ଆସୁ ଶୂନ୍ୟରେ ମିଶୁ
କୁହୁକ ପରାଏ ଆଖିକୁ ଦିଶୁ
ମିଛ ଏ ସଂସାର ମାୟାରେ ଭରା । ୨ ।

ଥିବାଯାଏ ତୁହି ନର ଶରୀରେ
ଅଡ଼େଇ ଦିନକୁ ବଡାଇ କରେ
ଯାହା ଦେଖେ ସବୁ କହେ ତାହାର
ଅସତ୍ ପଥକୁ ନ ଥାଏ ଡର
ଛତା ଥାଉଁ ଭେଦେ ବରଷା ଖରା । ୩ ।

ଉଡିଗଲେ ତୁହି ଛାଡ଼ି ଏ ଘଟ
ସରିଯାଏ ସବୁ ସଂସାର ନାଟ
କରିଥାଏ ଜୀବ ଧରମ ଯାହା
ହୁଏ ତା କେବଳ ଶେଷକୁ ସାହା
ମାୟାରେ ନ ମଣ ଧରାକୁ ସରା । ୪ ।

ଏ ଶରୀର ଅଟେ କେବଳ ଭାଡ଼ି
ଜୀବ ରୂପୀ ପାରା ଯାଏ ତା ଛାଡ଼ି
ଚାଲିଗଲେ ଜୀବ ଛାଡ଼ି ଶରୀର
ଲିଭିଯାଏ ଦୀପ ଘୋଟେ ଅନ୍ଧାର
ରାମ ନାମ ସତ୍ୟ ମିଥ୍ୟା ଏ ଧରା । ୫ ।

Digitized by srujanika@gmail.com

## ୧୪- ମନ ସାରୀ ଲୋ ବେଳ ଥାଉଁ ଥାଉଁ ଭଜ ହରିଲୋ

ମନ ସାରୀ ଲୋ ! ବେଳ ଥାଉଁ ଥାଉଁ ଭଜ ହରିଲୋ । (ଘୋଷା)

ସୁନା ପଞ୍ଜୁରିରେ ରହି, ହରିଙ୍କୁ ଚହ୍ନିଲୁ ନାହିଁ
ମାୟା ଜାଲେ ଚଢ଼ି ହେଉ ଧାରି ଲୋ । ।୧।

ବହିବ ତୋ ଅଣଗୁଣ, ପଞ୍ଜୁରିଟି ହେବ ନାଶ
ଯିବ ତୋ ସୁଖ ସୁହାଗ ସରି ଲୋ । ୨ ।

ବେଳ କାଳ ଗଡ଼ିଗଲେ, ଯେତେ ତୁ ବସି ଖୋଜିଲେ
ନ ମିଳିବେ ସେତ ହେବୁ ଝୁରି ଲୋ । ୩ ।

ହେଉଥିବୁ ଛଟପଟ, ନ ଯିବେ କେହି ନିକଟ
ନୟନୁ ଝରୁଥିବ ବାରି ଲୋ । ୪ ।

ଏ ସଂସାର ପାରାବାର, ଯେବେ ତୁ ହୋଇବୁ ପାର
ଚିତ୍ତରେ ରଖ ତାହାଙ୍କୁ ଧରି ଲୋ ! ୫ ।

ଦାରା, ସୁତା, ସୁତ ଯେତେ, ସୁଖର ସାଥି ସମସ୍ତେ
ଜୀବନ ପାଣି ଫୋଟକା ପରି ଲୋ । ୬ ।

ଯାହା ସତ୍ୟ ଚିରନ୍ତନ, ସେ ପାଦେ ଦିଅ ଧିଆନ
ରଖ ତାହାଙ୍କୁ ନଜର କରି ଲୋ । ୭ ।



Digitized by srujanika@gmail.com

## ୧୫- ମିଥ୍ୟା ପ୍ରତାରଣ ହେଲେ ତୋର ଚର ସାଥି

ମିଥ୍ୟା, ପ୍ରତାରଣା ହେଲେ ତୋର ଚର ସାଥି
ତାଙ୍କ ମେଳେ ଜୀବନଟା ଗଲା ତୋର ବିତି ରେ
କାମ, କ୍ରୋଧ ସଙ୍ଗେ କଲୁ ପ୍ରୀତି
ମୋହ, ମଦ, ମାତ୍ସର୍ଯ୍ୟଙ୍କୁ କଲୁ ତୋ ସମ୍ପତ୍ତି ରେ । ୧ ।
ସତ୍ୟ, ନ୍ୟାୟ, ଧର୍ମ ପଥେ ନ ଦେଲୁଟି ମନ
ଅସତ୍ ଉପାୟେ ଅରଜିଲୁ ଧନରେ
ନ ରହିଲା ହିତାହିତ ଜ୍ଞାନ
ଆଖି ଥାଉଁ ଥାଉଁ ହେଲୁ ଅନ୍ଧର ସମାନ ରେ । ୧ ।
ସବୁ ମୋର ମୋର କହି ହେଉ ତୁ ବାତୁଳ
ନ ଭାବୁ ଏ ଦୁନିଆଟା ଖାଲି ଧୂଳି ଖେଳରେ
ଭାଇ, ବନ୍ଧୁ ସରବେ ତ ପର
ଯେ ଯାହା ବାଟରେ ଯିବେ ପୂରିଗଲେ କାଳ ରେ । ୩ ।
ଆସିଥିଲୁ ଖାଲି ଖାଲି ଯିବୁ ଖାଲି ଖାଲି
ନ ଯିବ ତୋର ସାଙ୍ଗରେ କଣିକାଏ ବାଲିରେ
ଦେଖି ଶୁଣି ସବୁ ଯାଉ ଭୁଲି
ନ ଭାବୁ ଏ ପାଣି ଫୋଟକାରୁ ବଳି ରେ । ୪ ।
କେତେ କେତେ କୋଟି କୋଟି ଜନ ଯମ ଘର
ଯାଉଛନ୍ତି, ଯାଉଥିବେ ମର ଏ ଶରୀରରେ
ମିଥ୍ୟା ଅଟେ ଏ ମାୟା ସଂସାର
ମାୟା ଜାଲେ ପଡ଼ି କଲବଲ ହୁଏ ନର ରେ । ୫ ।
ଧରମ ଧନକୁ ମନ କର ଅରଜନ
ସେହି ସିନା ଅଟେ ସତ୍ୟ ଯେହି ଚିରନ୍ତନ ରେ
ସେହି ଧନେ ରଖ ତୋ ଧିଆନ
ତାହା ବିନୁଁ ତୋ ସଙ୍ଗତେ ନ ଯିବେଟି ଆନ ରେ । ୬ ।

—o—

Digitized by srujanika@gmail.com

## ୧୬- ଆରେ ଭୁଲ୍‌ମନ

ଆରେ ଭୁଲ୍ ମନ !
ବୃଥା ଭେଳକିରେ ଭୁଲି ନେଲୁ ଧନ । (ଘୋଷା)

ଧନକୁ କଲୁ ତୁ ଗଳାହାର, ସ୍ୱାର୍ଥକୁ କଲୁ ତୁ ଆଗୁ ସାର,
ବାଉଳା ତୁ ହେଲୁ, ବାଟ ଭୁଲିଗଲୁ, ଉଦୟ ନୋହିଲା ସଦ୍‌ଜ୍ଞାନ । ୧ ।

ଦୁଃଖକୁ ମଣିଲୁ ସୁଖ ବୋଲି, କଳା ଧଳେ ତୋତେ ଧଳା ଭଳି
ମାୟା ମରୁଚିକା ପଛେ ଆରେ ବୋକା ଧାଇଁ ଧାଇଁ ଗଲା ତୋ ଜୀବନ । ୨ ।

ବିଷୟକୁ ତୁ ମଣିଲୁ ନିଶି, ଜଞ୍ଜାଳ ଜଙ୍ଗଲେ ଗଲୁ ପଶି
ହିଂସ୍ର ଜନ୍ତୁ ମୁଖେ ପଡ଼ି ମହାଦୁଃଖେ ହେବୁ ଶେଷେ ସିନା ହତପ୍ରାଣ । ୩ ।

ସୁଖବେଳେ ସର୍ବେ ସଖା ତୋର, ଦୁଃଖ ବେଳେ ହୋଇଯିବେ ଦୂର
ନିଜ କର୍ମ ପାଇଁ ନିଜେ ହେବୁ ଦାୟୀ, ନୋହିବେ ତୋ ଦୁଃଖେ ଭାଗୀ ଆନ । ୪ ।

ବିଧାତା ମେଲିଛି ମାୟା ଜାଲ, ପଡ଼ି ତହିଁ ହେଉ କଲବଲ
ଦେଖୁଛୁ ତୁ ନିତି ଆରେ ମୂଢ଼ମତି, ଶୂନ୍ୟହସ୍ତ ଯାଉଛନ୍ତି ନର । ୫ ।

ଚଉରାଶି ଲକ୍ଷ ମହା ଭ୍ରମେ, ନ ବୁଝିବୁ ହେବୁ ଦରଜନ୍ମେ
ଆଗ ପଛ କଥା ନ କଲୁ ରେ ଚିନ୍ତା, ହା' ହୁତାଶରେ ଯିବ ପ୍ରାଣ । ୬ ।

କାଳ ଅଟେ ବଡ଼ କଳିଆର, ନାହିଁ ବଡ଼ ସାନ ଭେଦ ତାର
ନ ପାରିବୁ ଜାଣି କେବେ ନେବ ଟାଣି, ବେଳ ଥାଉଁ ହୁଅ ସାବଧାନ । ୭ ।

ନିଲାମ ହୋଇବ ଉଦ୍ୟ ତୋର, ହେଉଥିବୁ ତୁହି ବାର୍‌ଦ୍ୱାର
ନ ଦେବେ ଆଶ୍ରା କେହି ଜଣେ ହେଁ, ତୁ ଖାତକ ସେ ତୋ ମହାଜନ । ୮ ।

ବେଳ ଥାଉଁ ବୁଝି ସୁଝି ସବୁ, ହୁସିଆର ହୁଅ ଆରେ ବାବୁ
ଜ୍ଞାନ ନେତ୍ର ମେଲି ପାପ କର୍ମ ଭୁଲି କର ସଦା ଧର୍ମ ଆଚରଣ । ୯ ।

ସେହି ହେବ ତୋର ଚନ୍ଦ୍ରାଧର, ସେହି ତୋର ସଖା ସହୋଦର
ତୋର ହର୍ତ୍ତା କର୍ତ୍ତା ଏ ଜଗତ କର୍ତ୍ତା, ତାଙ୍କ ପାଦପଦ୍ମେ ରଖ ଧ୍ୟାନ । ୧୦ ।

—o—

Digitized by srujanika@gmail.com

## ୧୭- ମରଣାନ୍ତେ ରାଜା ପ୍ରଜା ହୁଅନ୍ତି ସମାନ

ମରଣାନ୍ତେ ରାଜା, ପ୍ରଜା ହୁଅନ୍ତି ସମାନ
ମରଣ ନ ଜାଣେ କିଏ ବଡ଼ କିଏ ସାନରେ । (ଘୋଷା)

ବଡ଼ ସାନ ଭେଦ ବିନା ମଣିଷ ଉଆଣ,
ମରଣ ନ ଦେଖେ କିଏ ଧର୍ମ କେ ନିଧନରେ । । ୧ ।

ନଗଣ୍ୟ ଅଟେ ତା ପାଶେ ପଦବୀ, ସମ୍ମାନ,
ନଗଣ୍ୟ ଅଟେ ତା ପାଶେ ବିଳାସ ବ୍ୟସନରେ । । ୨ ।

ନ ଯାଆନ୍ତି ସଙ୍ଗେ ଜଣେ ଆତ୍ମୀୟ ସ୍ୱଜନ,
ନ ଯାଏ କାହା ସାଙ୍ଗରେ ଅରଜିଲା ଧନରେ । । ୩ ।

ଯେଉଁ ସ୍ଥାନେ ଶେଷେ ସର୍ବେ ହୁଅନ୍ତି ମିଳନ,
ସେ ଅଟଇ ଏକମାତ୍ର ପବିତ୍ର ଶ୍ମଶାନରେ । । ୪ ।

ଯାଏ ଭସ୍ମ ହୋଇ ତହିଁ ଗର୍ବ, ଦମ୍ଭ, ପଣ,
ନ ରହେନି ଭେଦ ମାତ୍ର ପ୍ରାଣୀ ଚିହ୍ନ ବର୍ଣ୍ଣରେ । । ୫ ।

ଜୀବନର ଅଭିନୟ ହୁଏ ସମାପନ,
ରଙ୍ଗମଞ୍ଚେ ଯବନିକା ହୁଅଇ ପତନରେ । । ୬ ।

ଜୀବନ ପ୍ରଦୀପ ହୋଇଯାଏ ମ୍ରିୟମାଣ,
ସଂସାରର ଲୀଳାଖେଳା ହୁଏ ଅବସାନରେ । । ୭ ।

ଆସେ ଯହୁଁ ଜୀବ, ଶେଷେ ଯାଏ ସେହି ସ୍ଥାନ,
ସେହି ଅଟେ ଶାନ୍ତି, ମୁକ୍ତି ସେହି ସନାତନରେ । । ୮ ।

—o—

Digitized by srujanika@gmail.com

## ୯- ଜୀବନର ପରିଣତି ମରଣେ ସଫଳ ହୁଏ

ଜୀବନର ପରିଣତି ମରଣେ ସଫଳ ହୁଏ
ତଥାପି ସେ ମରଣକୁ ମନ ସଦା ଡ଼ରୁଥାଏ
ଚିତ୍ରଗୁପ୍ତ ପାଞ୍ଜି ଧରି ବାଟ ଜଗି ବସିଥାଏ । (ଘୋଷା)

ଜନ୍ମ ପରେ ଆସେ ମୃତ୍ୟୁ ଜଗତର ଏହା ଖେଳ
ଯାଏ ଜୀବ ସେ ପଥରେ ପୂରିଯାଏ ଯେବେ କାଳ
ନିତି ନିତି ଦେଖି ଦେଖି ମନ ପୁଣି ଭୁଲିଯାଏ । ୧ ।

ମୋହ ମାୟା ପାଶେ ପଡ଼ି ମିଛେ ଭ୍ରମୁଥାଏ ନିତି
ବିଷୟ ନିଶାରେ ଘାରି ହେଉଥାଏ ଦିନ ରାତି
ବିଷକୁ ପୀୟୁଷ ମଣି ମନ ଆନନ୍ଦରେ ପିଏ । ୨ ।

ବିଷକୁ ଯେ ପାନ କରେ ନିଶ୍ଚେ ମୃତ୍ୟୁ ମୁଖେ ପଡ଼େ
ବିଷୟକୁ ଦେଖୁ ଦେଖୁ ଜୀବନ ତାହାର ଗୁଡ଼େ
ତଥାପି ଏ ମନ ତାହା ପଛେ ପଛେ ଧାଉଁଥାଏ । ୩ ।

ଆସିଥାଏ ଯେଉଁ ଖାଲି ଯାଏ ଶେଷେ ସେହି ଖାଲି
କୋକେଇରେ ବନ୍ଧା ହୋଇ ସବୁ ମୋହ ମାୟା ଭୁଲି
ଏ ମର ଶରୀର ଶେଷେ ପୋଡ଼ଣ ପାଉଁଶ ହୁଏ । ୪ ।

ଏ ଭବ ସାଗର ଯେବେ ପାରି ହେବୁ ଆରେ ମନ
ବେଳ ଥାଉଁ ଥାଉଁ ବିଭୁ ପାଦ ପଦ୍ମେ ରଖ ଧ୍ୟାନ
ସେହି ତୋର ଗତି, ମୁକ୍ତି ତାଙ୍କ ବିନୁ ନାହିଁ କିଏ । ୫ ।

—0—

Digitized by srujanika@gmail.com

## ୧୦· ମନ ମଟଗ୍ରେ ପେଡୀ ଚୋର ସଜ କର

ମନ ମଗଗ୍ରେ ! ପେଡ଼ୀ ଚୋର ସଜ କର
କେତେବେଳେ ଅସି ବାନ୍ଧି ନେବ କାଳ ନାହିଁ ତାର ବେଳ ବାର । (ଘୋଷା)
ପେଡ଼ୀରେ ଯତନେ ସଜାଡ଼ି ରଖରେ ହରି ନାମ ମାଳା ତୋର
ସେହି ବିନା ହେବ ସାହା ତୋ ପଥକୁ ଆଉ ସବୁ ହେବେ ପର । । ୧ ।
ଅଜ ସଜାଡ଼ିବୁ କାଲି ସଜାଡିବୁ ଭାବ କଲେ ତୁ ଉଛୁର
ହେଳା କଲେ ବେଳା ଯାଏଟିରେ ବୁଝ ଏ କଥା ମନେ ବଗୁର । ୨ ।
ମନ୍ଦ କଥା ଯେତେ ପଛକୁ ପିଙ୍ଗିଦେ ମନକୁ କର ନିର୍ମଳ
ଭଲ କାମ ଯାହା ଅଗ କର ତାହା ଉଛୁର ନ କର ବେଳ । ୩ ।
ସରଗକୁ ସିଡ଼ି ନ ବାଣିଲା ଚଢ଼ି ହେଲା କଣ ଲଙ୍କେଶ୍ବର
ଡରଡର ହୋଇ ସୀତାଙ୍କୁ ଫେରାଇ ଶେଷେ ହୋଇଲା ସଂହାର । ୪ ।
ବନ୍ଦୁ ପତ୍ରେ ଜଳ ଯେସନେ ଟଳ ଟଳ ତେସନ ଜୀବନ ସ୍ଥିର
କେତେବେଳେ ଯିବ ନ ପାରିବୁ ଜାଣି ହେଣୁ ତା କ୍ଷଣ ଭଙ୍ଗୁର । ୫ ।
ପର ମନ୍ଦ ଚିନ୍ତା ଦର ଦ୍ବେଷ ହିଂସା ମନରେ ହେଣୁ ନ ଧର
ସେ ଅଟେଟି ବଷ କରେ ବୁଦ୍ଧି ନାଶ ସେ ଦୁଷ୍ଟି ବଶ ତାର । ୬ ।
ବୁଦ୍ଧି ହେଲେ ନାଶ ପାପ କରେ ଗ୍ରାସ ପାପଟି ମୃତ୍ୟୁର ଦ୍ବାର
ବେଳ ଥାଉ ଥାଉ ନ ଦେଖିଲେ ଏହା ହେବୁ ଶେଷେ ହରବର । ୭ ।

—○—

## ୧୧- ଅମା ଅନ୍ଧାରରେ ଚନ୍ଦ୍ରକୁ ଖୋଜିଲେ

ଅମା ଅନ୍ଧାରରେ ଚନ୍ଦ୍ରକୁ ଖୋଜିଲେ ପାଇବୁ କାହୁଁରେ ମନ ?
ମନ ନିର୍ମଳ ନ କଲେ ତୁ କାହୁଁ ପାଇବୁରେ ନାରାୟଣ ? (ଘୋଷା)
ହିଂସା ଦ୍ବେଷ, ରୋଷ ରହିଛନ୍ତି ପୂରି, ଅହରହ ଚଉଦିଗରେ ତୋହର
ତାଙ୍କୁ କଲେ ଦୂର ଯିବଟି ଅନ୍ଧାର, ମିଳିବ ଖୋଜିଲା ଧନ । ୧ ।
ଷଡ଼ ରିପୁଙ୍କୁ ତୁ ନ କଲେ ଆୟତ୍ତ, ନ ପାଇବୁ କେବେ ସେ ଅମୂଲ୍ୟ ବସ୍ତୁ
ସେ ତୋର ଅଇଚ ସେ ତୋର ହଇଚ, ସେ ତୋର ଭଗାଣ କାଣ । ୨ ।

Digitized by srujanika@gmail.com

ତୋ ହୃଦ କ୍ଷେତକୁ ଭଲ କରି ଚଷ, ମନକୁ ଲଙ୍ଗଳ, ଜ୍ଞାନ କରି ଈଷ
ପଡ଼ିଆ ଭୂଇଁରେ ନ ଫଳେ ଫସଲ ବୁଣିଲେ ଯେତେ ବିହନ । ୩ ।
ବିହନ ଅଟଇ ହୃଦର ଭକତି, ଉହ୍ନାଏ ଯହିଁ ତହିଁରେ ଟଳନ୍ତି
ଉଠିବ ବାଲୁଙ୍ଗା ନ ଫଳିବ ଧାନ କଲେ ବି ଯେତେ କର୍ଷଣ । ୪ ।
ଭାବକୁ ନିକଟ ଅଭାବକୁ ଦୂର, ତୁଳସୀ ଭକତ ବତ୍ସଳ ଈଶ୍ୱର
ତେଣୁ ଆରେ ମନ ନିଷ୍ଠାରେ ରହିଣ, କର ହରି ନାମ ଧ୍ୟାନ । ୫ ।

—o—

## ୧୨- ଯାହା ତୁ ସମ୍ବାଦ ରଖୁ ସବୁ ପର ପାଇଁରେ

ଯାହା ତୁ ସମ୍ବାଦ ରଖୁ ସବୁ ପର ପାଇଁରେ
ମଲା ବେଳେ ତୋ ସାଥିରେ କିଛି ଯିବ ନାହିଁରେ । (ଘୋଷା)

ଜାଣିଶୁଣି ସବୁ, ବୃଥା ଧନ ଗଦେଇ ଥାଉଁରେ
ଦାନ ଧରମ ନ କରି ସାଇତି ଥାଉରେ । ୧ ।
ପାପକୁ ନ ଡରି ପର ତଣ୍ଟିରେ ତୁ ଛୁରୀ ଦେଇ
ଦେଉ ଅନାୟାସେ ତାର ଧନ ଲୁଟି କରିରେ । ୨ ।
ଟିଣ୍ଡୁ ନିଜକୁ ଚତୁର ଦୁନିଆଁକୁ ଠିଲୁରେ ।
ବାଲୁଙ୍ଗା ବଢାଉ ଧାନ ଉପାଡ଼ିଣ ବିଲୁରେ । ୩ ।
ଅନ୍ଧ ଭଳି କାମ କରୁ ଆଖି ଥାଉଁ ଥାଉଁରେ
ବୁଦ୍ଧି ବିବେକକୁ ତୋର ପୋଡ଼ି ଜାଳି ଦେଉରେ । ୪ ।
ନିଜେ କଲା ପାପ ଫଳ ଭୋଗିବୁ ତୁ ନିଜେରେ
ବେଳ ଥାଉଁ ଥାଉଁ ମନ, ମନେ ଏହା ବୁଝରେ । ୫ ।
ନେଡ଼ି ଗୁଡ଼ି କହୁଣିକୁ ବୋହିଗଲେ ଖାଇରେ
ତା ସ୍ୱାଦ ସହଜେ କି ଆଉ ଜିଭ ଛୋଇରେ ? । ୬ ।
ଅନିତ୍ୟ ଅସତ୍ୟ ଅଟେ ଏ ସଂସାର ସୁଖରେ
ତେଣୁ ତାକୁ ତେଜ କବି ପାଦେ ଲକ୍ଷ୍ୟ ରଖରେ । ୭ ।

—o—

Digitized by srujanika@gmail.com

## ୧୩- ଚାଲିବାକୁ ଅଛି ବାଟ ଆଉ ବହୁ ଦୂର

ଚାଲିବାକୁ ଅଛି ବାଟ ଆଉ ବହୁ ଦୂରରେ
ଦିନତ ଆସଇ ସରି ପାଦ ପକା ଖରରେ । (ଘୋଷା)

ଅନ୍ଧାର ଆସଇ ମାଡ଼ି, ପଥ ହୁଡ଼ି ଯିବୁ ପଡ଼ି
ନ ଥିବେ ତୋ ସାଥେ ଜଣେ କେହି ସହଚରରେ । ୧ ।

ନଷ୍ଟି ଯିବ କରୁ ଖସି, କାନ୍ଦୁଥିବୁ ଏକା ବସି
ଖୋଜି ଖୋଜି ଯିବୁ ଥକି ହୋଇ ତୁ ଆତୁରରେ । ୨ ।

ବେଳ ଥାଉଁ ଥାଉଁ ସାର, ଯାହା ଅଛି କରିବାର
ମାନବ ଜୀବନ ଅଟେ ସବୁଠାରୁ ସାରରେ । ୩ ।

ତୋହରଠାରେ ଧର୍ମ ଜ୍ଞାନ, ଦେଇଛନ୍ତି ଭଗବାନ
ଧରମେ ଚାଲିଲେ ମନ ହେବୁ ଭବୁଁ ପାରରେ । ୪ ।

ଅଧରମ ପଥେ ଗଲେ, ପଡ଼ିଯିବୁ କଷ୍ଟେ ଖାଲେ
ପିଲାଦିନୁ ଧର୍ମ ଧନ ତୁ ସଞ୍ଚୟ କରରେ । ୫ ।

ଦିନ ଚାଲିଗଲେ ଯାଇ, ଆଉ ତ ତା ନ ଫେରଇ
ଅପୂରଣ ରହିଯିବ କାମ ହବୁ ତୋତରେ ।

ପାପ କର୍ମେ ଲଟପଟ, ହେଲେ ହେବୁ ଛଟପଟ
ବେଳ କାଳ ଥାଉ ଥାଉ ହରି ନାମ ସ୍ମରରେ । ୭ ।

—

Digitized by srujanika@gmail.com

## ୧୮- ସଂସାର ହ୍ରଦରେ ଖେଳେ କାଳରୂପୀ ଫଣୀ

ସଂସାର ହ୍ରଦରେ ଖେଳେ କାଳ ରୂପୀ ଫଣୀ,
ଭକ୍ଷଣ କରେ ସେ ସଦା ଭେକ ରୂପୀ ପ୍ରାଣୀ । (ଘୋଷା)

ଫଣୀର କବଳେ ପଡ଼ି, ଭେକ ଭୟେ ଗ୍ରହେ ରଡ଼ି,
ମରଣ ନିକଟ ହେବା ନିଶ୍ଚୟ ସେ ଜାଣି । ।୧।

କର୍କ ପୋକ ଉର୍ଦ୍ଧେ ଦେଖି, ତଥାପି ଉଠେ ଉଲ୍ଲଙ୍ଘି,
ଭକ୍ଷଣ କରେ ତାହାକୁ ଜିହ୍ୱା ଅଗ୍ରେ ଟାଣି । ।୨।

ଏ ଭବ ସାଗରେ ଜନ, କାଳ କବଳେ ପଡ଼ିଣ,
ମରଣକୁ ଡରି ସଦା କରଇ ଗ୍ଳାନି । ।୩।

ସୁଖ ସ୍ୱର୍ଗ ଆଶା ତାର, ତଥାପି ନ ହୁଏ ଦୂର,
ମୋହ, ମାୟା ତା ମନକୁ ଧରନ୍ତି ଯେ ଟାଣି । ।୪।

ଦୁଃଖ ସାଜ ସୁଖୀ ବେଶ, କରେ ତା ମନକୁ ବଶ,
ପାଷାଣକୁ ମଣେ ତେଣୁ ସେ ପରଶ ମଣି । ।୫।

ବିଷକୁ ମଣେ ପୀୟୂଷ, ପିତା ଲାଗେ ଭକ୍ତି ରସ,
ବେଳ ଥାଉଁ ବୁଝିଥାଉ ହୁଅ ମନ ଜାଣି । ।୬।

କଲେ ତୁ ତହିଁରେ ହେଳା, ବୁଡ଼ିଯିବ ତୋର ଭେଳା,
ନେଉ ଗୁଡ଼ ବନ୍ଧୁଗଣେ ଗୁଣିବୁ ଖାଲି କହୁଣି । ।୭।

—o—

Digitized by srujanika@gmail.com

## ୧୯- ତୀର୍ଥକ୍ଷେତ୍ରେ ବାସ ସଦା ପ୍ରସାଦ ଭୋଜନ

ତୀର୍ଥ କ୍ଷେତ୍ରେ ବାସ ସଦା ପ୍ରସାଦ ଭୋଜନ,
କରିଲେ କେବଳ ମୋକ୍ଷ ନ ପାଏଟି ଜନ । (ଘୋଷା)

ମୁଖେ ଖାଲି ମନ୍ତ୍ର ପଢ଼ି ମିଛେ ପୂଜା ବିଧି,
କରୁଥିଲେ କଦାପି ନ ହୁଏଟି ବାଞ୍ଛା ସିଦ୍ଧି,
ବୃଥା ସବୁ ନ ଥିଲେଟି ହୃଦେ ଭକ୍ତି ଧନ । । ୧ ।

ସେବକ ନାମ ଧରିଣ ପ୍ରଭୁ ପଦେ ଧ୍ୟାନ,
ନ ରଖି କରେ ଯେ ଖାଲି ଶଠ ଆଚରଣ,
କରି କି ପାରେ ସେ କେବେ ଧର୍ମ ଅର୍ଜନ ? । ୨ ।

ଧର୍ମ ଚିହ୍ନା ଅଟେ ସେଠି ଥାଏ ଯହିଁ ସତ୍ୟ,
ସତ୍ୟ ବଳେ ନଭେ ଚନ୍ଦ୍ର, ସୂର୍ଯ୍ୟ ଆଛ ଯାତ,
ସତ୍ୟ, ଧର୍ମ ବିନା ମାଳା ଜପ ଅକାରଣ । । ୩ ।

ସତ୍ୟ ଅଟେ ମେଳ ନାହିଁ କପଟ ସହିଁରେ,
ସତ୍ୟ ନ ଆସେ କପଟ ରହିଲେ ଅନ୍ତରେ,
ସରଳ ହୃଦରେ ସତ୍ୟ କରେ ଅବସ୍ଥାନ । । ୪ ।

ସତ୍ୟ, ନ୍ୟାୟ, ଧର୍ମ ସଦା କର ଆଚରଣ,
ପ୍ରଭୁ ପାଦପଦ୍ମେ ରଖି ସଦା ତୋର ମନ,
ତେବେ ମୋକ୍ଷ ଦେବେ ଦୟାମୟ ଭଗବାନ । । ୫ ।

—o—

Digitized by srujanika@gmail.com

## ୨୦- ସାଗର ଢେଉ ସଦୃଶ ଅଟେ ଏ ଜୀବନ

ସାଗର ଢେଉ ସଦୃଶ ଅଟେ ଏ ଜୀବନ,
କ୍ଷଣେ ଉଠେ ଫୁଲି ପୁଣି କ୍ଷଣେ ହୁଏ ଲୀନ । (ଘୋଷା)

ପଥିକେ ହୋଇଣ ପଥ ଶ୍ରାନ୍ତ ବୃକ୍ଷ ମୂଳେ,
ମିଳନ୍ତି ଯେସନେ ଶ୍ରମ ମେଣ୍ଟାଇବା କାଳେ,
ଶ୍ରମ ଶେଷେ ଯେଝା ପଥେ କରନ୍ତି ଗମନ । ।୧।

ଅପେକ୍ଷା ନ କରେ କ୍ଷଣେ କାହା ପାଇଁ କଏ,
ହାଟୁଆ ହାଟ ସଉଦା କରନ୍ତି ଯହିଁଏ,
ସଉଦା ସାରି ଘରକୁ ଫେରନ୍ତି ଯେସନ । ।୨।

ନିଦ୍ରାରେ ଦେଖଇ ପ୍ରାଣୀ ଧନ ସ୍ୱପ୍ନ କେତେ,
ନିଦ୍ରା ଅନ୍ତେ ଯାଏ ସବୁ ଉଭାଇ ତୁରିତେ,
କ୍ଷଣିକ ଅଟେ ତେସନ ମାନବ ଜୀବନ । ।୩।

ବିଜୁଳି ଆକାଶେ ଯେହ୍ନେ ଆଭା ବିକାଶଇ,
ମୁହୂର୍ତ୍ତ ମଧ୍ୟରେ ପୁଣି ମେଘରେ ମିଶଇ,
ସେହିପରି ଅଟେ ଏହି ସଂସାର ବନ୍ଧନ । ।୪।

ସୁତ, ସୁତା, ଦାରା, ବନ୍ଧୁ ବାନ୍ଧବ, ସୋଦର,
ସୁଖର ସାଥି ସରବେ କେ ନୁହେଁ କାହାର,
ବୁଝି ଅବୁଝା ହୁଅନ ଆରେ ମୂଢ଼ ମନ । ।୫।

ପଦ୍ମ ପତ୍ରେ ଟଳ ଟଳ ହୁଏ ଯେହ୍ନେ ଜଳ,
ସେହିପରି ସଂସାରେ ଏ ଜୀବନ କାଳ,
ତେଣୁ ଏ ସଂସାର ସୁଖେ ନ ହୁଅ ମଗନ । ।୬।

ଏକମାତ୍ର ମୁକ୍ତି ଦାତା ପରମ ଈଶ୍ୱର,
ତାଙ୍କ ପାଦ ପଦ୍ମେ ଲୟ ରଖ ନିରନ୍ତର,
ଏ ଭବ ସାଗରୁ ସେ କରନ୍ତି ପରିତ୍ରାଣ । ।୭।

—୦—

Digitized by srujanika@gmail.com

## ୨୧- ସତ୍ତ୍ୱ, ରଜ, ତମୋ ଗୁଣ

ସତ୍ତ୍ୱ, ରଜ, ତମ ଗୁଣ ପ୍ରାଣୀର ଅଛେ ଏ ତିନ ଲକ୍ଷଣ ଯେ,
ତାହା ଜାଣନ୍ତି ଏକା ସଜ୍ଜନ ମୋ ମନରେ । ।୧।

ସତ୍ତ୍ୱଗୁଣୀ ଜନମାନେ, ଧାର୍ମିକ, ଦୟାଳୁ, ସରଳ ଗୁଣେ ଯେ,
କାଳ କାଟନ୍ତି ସେ ସାଧୁ ପଣେ ମୋ ମନରେ । ।୨।

ନ ଥାଏଟି ହୃଦେ ହିଂସା, ନ ଥାଏଟି ପର ଧନରେ ଆଶା ଯେ,
ନ ଘାରଇ ତାଙ୍କୁ କାମ ନିଶା ମୋ ମନରେ । ।୩।

ସଦ୍‌ଗୁରୁ ସତ୍‌ସଙ୍ଗ ମେଳେ, କାଟନ୍ତି କାଳ ସେ ମହା ମନ୍ତ୍ରେ ଯେ,
ଅନ୍ତେ ବସନ୍ତି ବୈକୁଣ୍ଠ ପୁରେ ମୋ ମନରେ । ।୪।

ରଜୋଗୁଣୀ ଯେତେ ଜନ, ନିଜ ସ୍ୱାର୍ଥ ଲାଗି ସେ ନିଶିଦିନ ଯେ,
ରଖିଥାନ୍ତି ସଦା ମନ ଧ୍ୟାନ ମୋ ମନରେ । ।୫।

ଧନେ ସଦା ଲୋଭ ଥାଏ, ଧନ ପଛେ ଧାଇଁ ଜୀବନ ଯାଏ ଯେ,
କେଉଁ ପ୍ରକାରେ ସେ ଶାନ୍ତି ନ ପାଏ ମୋ ମନରେ । ।୬।

ଦୁଃଖି ଦରିଦ୍ର ସେବାରେ, ନ ଥାଏଟି ମନ କେବେହେଁ ତିଳେ ଯେ,
ପର ଦୁଃଖେ ତା ହୃଦ ନ ଟଳେ ମୋ ମନରେ । ।୭।

ଯେବେ ତାର ମୃତ୍ୟୁ ହୋଇ, ଏ ନର ଲୋକ ର ସେ ଭ୍ରମୁଥାଇ ଯେ,
ତାହା ଆତ୍ମାର ମୋକ୍ଷ ନୁହଇ ମୋ ମନରେ । ।୮।

ତମୋଗୁଣୀ ପ୍ରାଣୀମାନେ, ହିଂସା, ଦ୍ୱେଷ, ଗ୍ରେଷ, ଅସାଧୁ ପଣେ ଯେ,
ମଜ୍ଜି ରହନ୍ତି ସେ ସବୁ ଦିନେ ମୋ ମନରେ । ।୯।

ମିଥ୍ୟା, ପରଦାର୍, ଧନ, ପର ନିନ୍ଦା, ପର ଅନିଷ୍ଟ ମନ ଯେ,
ବୁଡ଼ି ରହିଥାଏ ଅନୁକ୍ଷଣ ମୋ ମନରେ । ।୧୦।

ଦେବତା ବ୍ରାହ୍ମଣେ ଭକ୍ତି, ଦାନ ଧର୍ମ କର୍ମେ ନ ଥାଏ ମତି ଯେ,
ଛନ୍ଦ କପଟ ତାଙ୍କର ମତି ମୋ ମନରେ । ।୧୧।

Digitized by srujanika@gmail.com

ଶାସ୍ତ୍ର, ପୁରାଣ ବଚନ, ବିଷ ସମ ତାଙ୍କୁ ଲାଗଇ ପୁଣି ଯେ,
ତେଣୁ ହୁଅନ୍ତି ସେ ହତଜ୍ଞାନ ମୋ ମନରେ । ।୧୨।

ଅନ୍ତେ ଭୋଗନ୍ତି କଷଣ, ପର ଜନ୍ମେ କୀଟ ରୂପ ଧରଣ ଯେ,
ଘୋର ନରକେ ପଡ଼ନ୍ତି ଜାଣ ମୋ ମନରେ । ।୧୩।

ଗୀତା ଭଗବତ ବାଣୀ, କେବେହେଁ ଏହାକୁ ମିଥ୍ୟା ନ ମଣି ଯେ,
ଏଣୁ ସାବଧାନ ହୁଅ ଶୁଣି ମୋ ମନରେ । ।୧୪।

ଏହି ଭବ ପାରାବାର, ଯିବୁ ଯେବେ ଭଲେ ହେବାକୁ ପାର ରେ,
ସତ୍ତ୍ୱ ସ୍ୱଭାବ ବେଲକୁଁ ଧର ମୋ ମନରେ । ।୧୫।

—o—

## ୨୨- ହରି ନାମେ ଅଛି କି ନିଶା

ହରି ନାମେ ଅଛି କି ନିଶା,
ଯେତେ ପିଉଥିଲେ ସେ ନାମ ମଦିରା,
ସେତେ ବଢୁଥାଏ ହୃଦୟ ତୃଷା । (ଘୋଷା)

ଯେ ନାମରୁ ପୀୟୁଷ ଝରେ, ସେ ନାମକୁ ପାତକ ଡରେ,
ସେ ନାମ ଭଜିଲେ ପାପିଷ୍ଠ ନରରେ, ବିଷୟ ବାସନା ଲାଗଇ କଷା । ।୧।
ମୃତ ସଞ୍ଜିବନୀରୁ ବଳି, ଶକ୍ତିଶାଳୀ ସେ ନାମାବଳି,
ମୋହ ମାୟା ଦୁଃଖ ନ ମାଡ଼ନ୍ତି ପାଖ, ବୈରାଗ୍ୟ ହୃଦରେ ବାନ୍ଧଇ ବସା । ୨ ।
ସେ ନାମରେ ରଖିଲେ ଲୟ, ନ ଥାଏଟି ଯମକୁ ଭୟ,
ଲାଗଇ ଅସାର ଏ ମର ସଂସାର, ନ ରହେଟି ଧନ ଜନ ଲାଳସା । ।୩।
ସୁତ, ସୁତା, ଦାରା ସକଳ, ସମ୍ପଦର ସାଥି କେବଳ,
ଅସଲ ବେଳକୁ କେ ନୋହିବେ ତୋର,
କେବଳ ସେ ହରି ନାମ ଭରସା । ।୪।
ସେ ନାମ କରିଲେ ଭଜନ, ମୋକ୍ଷ ହୋଇଯାଏ ଜୀବନ,
ହରି ନାମ ଭଜ ହରି ରସେ ମଜ, ସେ ଚରଣେ ସଦା ରଖରେ ଆଶା ।୫।

—o—

Digitized by srujanika@gmail.com

## ୨୩- ପାରିବୁ କି ରଖି ତୁ ଧରି

ପାରିବୁ କି ରଖି ତୁ ଧରି ? ଧରା ଦେବି ଯେବେ ତୋ ହାତେ ଯାଇ,
କାହା ପାଶେ ମୁହିଁ କେବେ ରହେ ନାହିଁ,
କେଉଁଠି ନ ଥାଇ ସବୁଠି ଥାଇ । (ଘୋଷା)

ସତ୍ୟ, ତ୍ରେତା, ଦ୍ୱାପର, କଳି କେତେ ଯୁଗ ଯିବ ଏ ଭଳି,
ଆସୁଥିବି ମୁହିଁ ଯାଉଥିବି ମୁହିଁ, ଧରା ଧାମେ ଧର୍ମ ସ୍ଥାପନ ପାଇଁ । ।୧।

ନ ଥାଏ ମୁଁ ସ୍ୱର୍ଗେ, ଭୂତଳେ, ନ ଥାଏ ମୁଁ କବା ପାତାଳେ,
ନାହିଁ ମୋର ଘର, ମୁଁ ବୁଲା ଫକୀର, ତିନ ପୁରଯାକ ମୁଁ ବୁଲୁଥାଇ ।୨।

ସଂସାରର ମୁଁ ସୃଷ୍ଟିକର୍ତ୍ତା, ପ୍ରାଣୀଙ୍କର ମୁଁ ପିତା ମାତା,
ଅବତାର ଧରି ଆସେ ମୁଁ ଧରାକୁ, ଖେଳା ଲୀଳା ସାରି ଯାଏ ପଳାଇ । ।୩।

କିଏ କେତେ ଡ଼ାକନ୍ତି ମୋତେ, କେତେ ଭୋଗ ଯାଚନ୍ତି ନିତ୍ୟେ,
କିଛି ନ ଏନାହିଁ କିଛି ଖାଏନାହିଁ, ମୋ ମନକୁ ଯେବେ ତାହା ନ ପାଇ ।୪।

ନ ଥାଏ ମୁଁ ବୈକୁଣ୍ଠ ପୁରେ, ଥବା ଯୋଗୀ ଜନ ହୃଦରେ,
ରହେ ମୁଁ ତା ପାଶେ ଦଣ୍ଡେ କି ନମିଷେ,
ସବୁ ଆଶ୍ରା ଛାଡ଼ି ଯେ ତୋତେ ଧ୍ୟାୟୀ ।୫।

—୦—

Digitized by srujanika@gmail.com

## ୨୪- ଶୁଣ ଶୁଣରେମନ ହୋଇଣ ସ୍ଥିର

ଶୁଣ ଶୁଣରେ ମନ ହୋଇଣ ସ୍ଥିର,
ସଂସାର ସିନା ଘୋର ଦୁଃଖ ସାଗର,
ସୁଖ ସମ ସେ ଲକ୍ଷେ ଅଖିକୁ ତୋର,
ସବୁ ଦୁଃଖର କନ୍ଦ ସେ ଗନ୍ତାଘର । ।୧।

ସୁତ, ସୁତା, ସୋଦର, ଦାର୍‌, ବାନ୍ଧବ,
ସର୍ବେ ରହନ୍ତି ପାଶେ ଥିଲେ ବାନ୍ଧବରେ,
ସ୍ୱାର୍ଥ ପାଇଁ କରନ୍ତି ତୋତେ ଆଦର,
ସ୍ୱାର୍ଥ ବିନୁ ନୁହନ୍ତି କେହ୍ବ କାହାରରେ । ।୨।

ସ୍ତ୍ରୀ'କୁ ଭାବୁ ସିନା ତୁ ଆପଣାର,
ସେ ବି ନ ଯିବ ଶେଷେ ସଙ୍ଗେ ତୋହରରେ,
ସାଙ୍ଗରେ ଯିବ ଏକା କଲା ଧରମ,
ସେହ୍ନ ହେବ ତୋ ସଖା ସୋଦର ସମରେ । ।୩।

ସବୁ ତୁ ତେଜ ତେଣୁ ସେ ପଥ ଧର,
ଭବ ସାଗରୁ ଯେବେ ହୋଇବୁ ପାରରେ,
ସାଇତ ରଖୁଅଛୁ ଯେତେ ସମ୍ପଦ,
ସମ୍ପଦ ନୁହେ ତାହା ଘୋର ବିପଦରେ । ।୪।

ଶାନ୍ତି ନ ମିଳେ ଭଳେ ସମ୍ପଦ ବଳେ,
ଶୂନ୍ୟ ହସ୍ତେ ତୁ ଯିବୁ ମରଣ ବେଳେରେ,
ସବୁ ଆଖିରେ ଦେଖି ଅନ୍ଧ ତୁ ହେଉ,
ସତ୍ୟ, ନ୍ୟାୟ, ଧର୍ମରେ ଚିତ୍ତ ନ ଦେଉରେ । ।୫।

ଶାସ୍ତ୍ର ପୁରାଣ କଥା ଲାଗଇ ପିତା,
ସଦା ସର୍ବଦା ଧନ ଲାଗି ତୋ ଚିନ୍ତାରେ,
ଶୈଶବ ଗଲା ତୋର ଖେଳରେ ବିତି,
ସ୍ତ୍ରୀ ସଙ୍ଗେ ଯୌବନଲେ ରହିଲୁ ମାତିରେ । ।୬।

Digitized by srujanika@gmail.com

ସବୁ ଜଞ୍ଜାଳ ବୁଦ୍ଧିନାଳେ ଯୋଟଇ,
ସତ୍ ମାର୍ଗରେ ଆଉ ମନ ନ ଯାଇରେ,
ଶମନଠାରୁ ଯେବେ ସମନ ପାଉ,
ସେତେବେଳେ ତୁ ବସି ଲୁହ ଗଡ଼ାଉରେ । ।୭।

ଶୁଣିବାକୁ ତୋ ଦୁଃଖ ନ ଥାନ୍ତି କେହି,
ସମସ୍ତେ ଗୁଳିଯାନ୍ତି ମୁହଁ ବୁଲାଇରେ,
ସ୍ୱହସ୍ତେ କଲାପାପ ପ୍ରାଣୀ ଭୋଗଇ,
ସେଥିରେ ଭାଗୀ ଆନ ନୁହନ୍ତି କେହିରେ । ।୮।

ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏ ତିନି ପୁର,
ସବୁ ପୁରେ ଧର୍ମର ଅଟଇ ଘରରେ,
ସତ୍ୟ ତ୍ରେତା, ଦ୍ୱାପର ଏ ତିନି ଯୁଗ,
ସବୁ ଯୁଗେ ଧର୍ମର ଆସନ ଆଗରେ । ।୯।

ସତ୍ୟ, ନ୍ୟାୟ, ଧରମ ସଂସାରେ ସାର,
ଶମନର କେବଳ ତାହାକୁ ଡରରେ,
ସବୁ ଯାଏ ଧରମ ଥାଏଟି ରହି,
ସେ ତତ୍ତ୍ୱ ଜାଣେ ଯେତୁ ମନୁଷ୍ୟ ସେହିରେ । ।୧୦।

—○—

Digitized by srujanika@gmail.com